# ବିସ୍ମୃତିର ଚକ୍ରବ୍ୟୂହ ମଧ୍ୟରେ
# ଓଡ଼ିଆ ଜାତିର ଜନକ
# ମଧୁସୂଦନ ଦାସ



ସଚ୍ଚିଦାନନ୍ଦ ଦାସ

# ବିସ୍ମୃତିର ଚକ୍ରବ୍ୟୂହ ମଧ୍ୟରେ
# ଓଡ଼ିଆ ଜାତିର ଜନକ
# ମଧୁସୂଦନ ଦାସ



ଆବିର୍ଭାବ - ୨୮ / ୦୪ / ୧୮୪୮

ତିରୋଭାବ - ୦୪ / ୦୨ / ୧୯୩୪

**ସଚ୍ଚିଦାନନ୍ଦ ଦାସ**

**ପ୍ରକାଶକ :**

ଶ୍ରୀ ଅରୂପାନନ୍ଦ ଦାସ
ଆଡଭୋକେଟ
ଜର୍ଣ୍ଣାଲିଷ୍ଟ କଲୋନୀ ଲେନ୍,
ମଧୁସୂଦନ ନଗର, ତୁଳସୀପୁର
କଟକ - ୮

**ଲେଖକ :**

ଶ୍ରୀ ସଚ୍ଚିଦାନନ୍ଦ ଦାସ

**ପ୍ରାପ୍ତିସ୍ଥାନ :**

ପ୍ରକାଶକ
ଦୂରଭାଷ-୯୪୩୭୦୨୦୭୦୨
ପ୍ରଥମ ସଂସ୍କରଣ-୨୮.୪.୨୦୧୦

**ଡି.ଟି.ପି. ଓ ମୁଦ୍ରଣ :**

ଏସ୍.ଆର୍. ଡି.ଟି.ପି.
ଦେଉଳସାହି, ତୁଳସୀପୁର,.କଟକ-୮

ଓଡ଼ିଶା ଜନ ସଂଗଠନ
ସୌଜନ୍ୟରେ ଲୋକାର୍ପିତ

ଦେୟ - ଟ. ୭୫.୦୦

**Publisher :**

**Sri Arupananda Das**
*Advocate*
*Journalist Colony Lane,*
*Madhusudan Nagar,*
*Tulasipur, Cuttack - 8*

**Writer :**

**Sri Satchidananda Das**

**Available :**

**From Publisher**
*Telephone : 9437020702*
*First Edition : 28.4.2010*

**D.T.P. and Printing :**

**S. R. D.T.P.**
*Deulasahi, Tulasipur,*
*Cuttack-8*

**Released by the Civility**
**of Orissa Jana Sangathana**

**Payable : Rs. 75.00**

# ଉତ୍ସର୍ଗ ପତ୍ର

ବାପା ବୋଉଙ୍କର ସ୍ନେହ ଶ୍ରଦ୍ଧାରେ ବଢି ତାଙ୍କରି ଆଦର୍ଶ ଓ ତାଙ୍କ ଠାରୁ ଶୁଣିଥିବା ମଧୁବାବୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଜୀବନ ଯାପନ କରି ଚାଲିଥିବା ସମୟରେ ଜୀବନର ସାୟାହ୍ନରେ ଏହି ପୁସ୍ତିକାଟି ଲିଖିତ ।

ସେହି ଦୁହିଁଙ୍କ କରକମଳରେ ଏହାକୁ ଅର୍ପଣ କଲି ।

ଆଶୀର୍ବାଦ ଭିକ୍ଷୁ

ଲେଖକ !

# ପୃଷ୍ଠଭୂମି

ଶ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ ବାବୁଙ୍କ ସୁରେନ୍ଦ୍ର ସାଏଙ୍କ ବିଷୟରେ ଲିଖିତ ପ୍ରବନ୍ଧଟି ସମାଜରୁ ପଢି ସାମାନ୍ୟ ଓଡିଆ ହୋଇଥିଲେ ମଧ୍ୟ ମୋ ପ୍ରାଣ କାହିଁକି ଏତେ ଉଦ୍‌ବେଳିତ ହୋଇଉଠିଲା ସେ ବିଷୟରେ କିଛି ପ୍ରକାଶ କରିବାର ଇଚ୍ଛାକୁ, ସ୍ପୃହଣୀୟ କି ଶୋଭନୀୟ ହେଉ ନହେଉ ବିଚାର ନକରି, ଅବଦମିତ କରିପାରୁନାହିଁ। ପ୍ରଥମେ ଗୋଟିଏ ଛୋଟ ଲେଖା ପ୍ରକାଶ ପାଇଥିଲା "ପ୍ରତ୍ୟାଖ୍ୟାତ ମଧୁସୂଦନ" ଶିରୋନାମାରେ। ତାକୁ କେତେକ ଗୁଣଗ୍ରାହୀ ପଢି ଆଉ ଯାହା ଜାଣେ ଲେଖିବାକୁ ଅନୁରୋଧ କଲାରୁ "ପ୍ରତ୍ୟାଖ୍ୟାନ ବଳୟରେ ଓଡିଶା ଜନକ ମଧୁସୂଦନ ଦାସ" ଶିରୋନାମାରେ ଆଉ ଗୋଟିଏ ଲେଖା ଆମ୍ଭ ପ୍ରକାଶ କଲା ଷାଣ୍ମାସିକ ଦୁନ୍ଦୁଭି ପତ୍ରିକାରେ। ତାହା ପରେ ଅନ୍ୟମାନଙ୍କ ଅନୁରୋଧ ମୋତେ ଭାରାକ୍ରାନ୍ତ କରିବାରୁ "ଚକ୍ରବ୍ୟୂହ ମଧ୍ୟରେ ମଧୁସୂଦନ ଦାସ" ଶିରୋନାମାରେ ଅନ୍ୟ ଲେଖାଟିଏ ଗୋଟିଏ ପାକ୍ଷିକ ସାମ୍ମୁଖ ପତ୍ରିକା ଏବଂ ସାପ୍ତାହିକ ସୁବାର୍ତ୍ତା ପତ୍ରିକାରେ ପ୍ରକାଶ ପାଇବା ଆରମ୍ଭ କଲାରୁ ଅନ୍ୟମାନଙ୍କ ବିଶେଷ ଅନୁରୋଧ କ୍ରମେ ଆଉ କିଛି ଯୋଗକରିବା ପରେ ତାହା ପୁସ୍ତିକା ଆକାରରେ "ବିସ୍ମୃତିର ଚକ୍ରବ୍ୟୂହ ମଧରେ ଓଡିଆ ଜାତିର ଜନକ ମଧୁସୂଦନ ଦାସ" ଶିରୋନାମାରେ ପ୍ରକାଶ ପାଇଲା। ମୋ କନିଷ୍ଠ ପୁତ୍ର ଏହାର ପ୍ରକାଶନ କରିବାର ଦାୟିତ୍ୱ ନେଇ ପ୍ରକାଶ ପାଇଛି। ଏହାର ମୂଲ୍ୟାୟନ ଓ ଉପାଦେୟତା ଶ୍ରଦ୍ଧେୟ ପାଠକ ମାନଙ୍କ ବିଚାର୍ଯ୍ୟ।

ମଧୁବାବୁଙ୍କ ସହ ମୋର ଅତ୍ମୀୟତା ଭାବ ଏତେ ଗଭୀର ଯେ ତାହା ପ୍ରକାଶ କରିବା ମୋ ପକ୍ଷେ କଷ୍ଟକର। ତଥାପି ଅନୁଭୂତିର ବଳୟରୁ କିଛି ଲେଖୁଛି। ମୋ ବାପା ସ୍ୱର୍ଗୀୟ ଅଦ୍ୱୈତଚରଣ ଦାସ ୧୯୨୦ ମସିହାରେ କଲିକତାରୁ ଏମ୍.ଏ ଓ ବି.ଏଲ୍ ପାଶ୍ କରି, କଂଗ୍ରେସ ସହ ସମ୍ପର୍କ ଥିବାରୁ, ମୁନସିଫ୍ ଚାକିରି ପ୍ରତି ଆଗ୍ରହୀ ନହୋଇ, ଓକିଲାତି କରିବା ନିମନ୍ତେ କଟକର ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ଅଧୀନରେ ଜୁନିୟର୍ ଭାବେ ଯୋଗଦାନ କଲେ।

ବିଚିତ୍ରାନନ୍ଦ ବାବୁ ମଧୁବାବୁଙ୍କ ଜୁନିୟର୍ ଭାବେ ଓକିଲାତି ଆରମ୍ଭ କରିଥିଲେ ଏବଂ ସେ ପର୍ଯ୍ୟନ୍ତ ମଧ୍ୟ ମଧୁବାବୁଙ୍କୁ ସାହାଯ୍ୟ କରୁଥାଆନ୍ତି । ମଧୁବାବୁ ତୀକ୍ଷ୍ଣ ଅନ୍ତର୍ଦୃଷ୍ଟି ସମ୍ପନ୍ନ ବିଚକ୍ଷଣ, ବୁଦ୍ଧିମାନ୍, ଜ୍ଞାନୀ ଓ ଅଦ୍‌ଭୁତ ସ୍ମରଣ ଶକ୍ତିଶାଳୀ ମେଧାବୀ ଓକିଲ ଥିଲେ । ତାଙ୍କ ସହ ସମାନ ସ୍ତରରେ ରହି ତାଙ୍କ କାର୍ଯ୍ୟରେ ସାହାଯ୍ୟ କରିବା ଏକ କଠିନ କାର୍ଯ୍ୟ ଥିଲା । ମୋକଦ୍ଦମା ପ୍ରସ୍ତୁତିରେ ସାମାନ୍ୟ ତ୍ରୁଟି ମଧୁବାବୁ, ତାଙ୍କ ଦୃଷ୍ଟି କୋଣରୁ ଅନୁଭବ କଲେ, ଭୀଷଣ ରାଗି ଜୁନିୟରଙ୍କ ଅବସ୍ଥା ଶୋଚନୀୟ କରିଦିଅନ୍ତି ।

ବାପା କିଛି ସମୟ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ସିରସ୍ତାରେ କାମ କଲାପରେ ସ୍ୱାମୀଜୀ ଅନୁଭବ କଲେ, ଅଦ୍ୱୈତ ମଧୁବାବୁଙ୍କ ନିକଟରେ କାମ କରିପାରିବ । ତେଣୁ ସ୍ୱାମୀଜୀ ବାପାଙ୍କୁ ମଧୁବାବୁଙ୍କ ନିକଟକୁ କାମ କରିବାକୁ ପଠେଇଲେ । ମଧୁବାବୁଙ୍କ ସହ କାମକଲା ସମୟରେ ବାପା ଦେଖିଛନ୍ତି ମଧୁବାବୁ ତାଙ୍କ ନିଜ କାର୍ଯ୍ୟ କରିବା ସମୟରେ ଅନେକ ଥର ତାଙ୍କ ମାତାଙ୍କ ଉକ୍ତିକୁ ସ୍ୱଗତୋକ୍ତି ହେଉ କି ଅନ୍ୟକୁ ଉପଦେଶ ଦେବା ଛଳରେ ହେଉ କହନ୍ତି - "ଆଲୋ ସଖି, ଆପଣା ମହତ ଆପେ ରଖି" । ତାଙ୍କର ଏହି ଉକ୍ତିର ପ୍ରଭାବ ଯୋଗୁଁ ସେ ସର୍ବଦା ନିଜ ମର୍ଯ୍ୟାଦା ପ୍ରତି ଦୃଷ୍ଟି ଦେଇଥାଆନ୍ତି । ଏହି ବିଷୟ ସମେତ ଅନେକ କଥା ମୁଁ ବାପାଙ୍କ ଠାରୁ ମଧୁବାବୁଙ୍କ ବିଷୟରେ ଶୁଣିଛି, ଯାହା ପରେ କେତେକ ବିଷୟ ବହିରେ ପଢ଼ିଛି ଏବଂ କିଛି ବିଷୟ ମଧ୍ୟ ଅପ୍ରକାଶିତ ଅବସ୍ଥାରେ ରହିଛି ।

ମଧୁବାବୁଙ୍କର ସେହି ଉକ୍ତି ଏବଂ ତାଙ୍କ ବ୍ୟକ୍ତିତ୍ୱ ଓ କାର୍ଯ୍ୟ ପ୍ରଣାଳୀର ପ୍ରଭାବ ବାପାଙ୍କ ଜୀବନ ଉପରେ ଏପରି ବିସ୍ତାର କରିଥିଲାଯେ, ତାହା ମୁଁ ପିଲାଦିନରୁ ବଡ ହେବା ପର୍ଯ୍ୟନ୍ତ ଅନୁଭବ କରିଛି ପ୍ରତି କ୍ଷଣେ କ୍ଷଣେ । ସୁଖ ସମୟରେ ଆତ୍ମ ବିଭୋର ନହୋଇ ଏବଂ ଦୁଃଖ ସମୟରେ ଭାଙ୍ଗି ନପଡି ସମସ୍ତ କଷ୍ଟ ନୀରବରେ ଆତ୍ମସ୍ଥ କରି ଧୈର୍ଯ୍ୟର ସହ ଆଗେଇବା ବେଳେ ଅନ୍ୟ ନିକଟରେ ନିଜର ସମ୍ମାନକୁ ହାନି ନକରିବା ଥିଲା ବାପାଙ୍କର ଏକ ବିଶିଷ୍ଟ ଗୁଣ ଯାହା ମୁଁ ଅନୁଭବ କରିଆସିଛି ସଦା ସର୍ବଦା । ଏହା ମଧ୍ୟ କେବେ ଭୁଲିନାହିଁ ଯେ ଏହା ମଧୁବାବୁଙ୍କ ଗଭୀର ପ୍ରଭାବର କାରଣ ।

ନିଃସ୍ୱାର୍ଥପର ଭାବେ ପର ସେବା କରିବା, ଅନ୍ୟର ଦୁଃଖ ଓ ଅଭାବ ସମୟରେ ସହାନୁଭୂତି ସହ ସାହାଯ୍ୟ କରିବା, ଏବଂ ନିଜ କ୍ଷମତା ଅନୁସାରେ ଦେଶ ସେବା କରିବାକୁ ଜୀବନର ଏକ ବ୍ରତ ଭାବେ ଗ୍ରହଣ କରିବା ବାପାଙ୍କର ଏକ ନୀତି ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ଥିଲା। ଏହାଯେ ମଧୁବାବୁଙ୍କ ପ୍ରଭାବରୁ ଏଥିରେ ସନ୍ଦେହ ନାହିଁ। ଗରୀବ ମହକିଲ ଦୂରରୁ ଚାଲି ଚାଲି ଆସି କଚେରି ସମୟ ପୂର୍ବରୁ କୌଣସି ମତେ ଚାମ୍ବରରେ ପହଞ୍ଚି ପାରିଲେ ସେ ଆଗ ଆମ ଘରେ ଖାଇ ପରେ କଚେରି ଯାଏ। ଯାହା ଦୁଇ ଚାରି ଟଙ୍କା ଆଣିଥାଏ ତାହା ମୋହରିର୍ ଜିମା ଦିଏ। ସେଥିରୁ ବାପା ଫିଜ୍ ଆକାରରେ କେତେ ପାଉଥିବେ ତାହା ଅନୁମେୟ। ମହକିଲ୍‌ଟି ଘରକୁ ଫେରିବା ବେଳେ ବସ୍‌ର ଭଡାଦେଇ ତାକୁ ଘରକୁ ବିଦା କରିବା ବାପାଙ୍କ କାମ। ଓକିଲାତିରେ କେବଳ ସ୍ୱାର୍ଥପର ଭାବେ ଅର୍ଥ ରୋଜଗାର କରିବା ତାଙ୍କ ଉଦ୍ଦେଶ୍ୟ ନଥିଲା। ମହକିଲଙ୍କ ଠାରୁ ଅର୍ଥ ଆଦାୟ କରିବାରେ ସହାନୁଭୂତି ହୀନ ନିଷ୍ଠୁରତା ଓ ନିଷ୍ପେଷଣର ପ୍ରଶ୍ନ ନଥାଏ। ଏ ହେଲା ବାପାଙ୍କ ଓକିଲାତି ଧାରାର ଦିଗ।

୧୯୩୭ ମସିହାରେ ପ୍ରଥମ ଇଲେକ୍ସନ ହେବା ନିମନ୍ତେ ସ୍ଥିର ହୁଏ। ବାବୁ ଗୋପବନ୍ଧୁ ଚୌଧୁରୀ ବାପାଙ୍କ କଲେଜର ସମସାମୟିକ ବନ୍ଧୁ ଥିଲେ। ସେ ପ୍ରଥମେ ଡେପୁଟି କଲେକ୍ଟର ହୋଇ ନିଜର ସ୍ୱାଧୀନ ମନୋବୃତ୍ତି ଯୋଗୁଁ ପରେ ଚାକିରି ଛାଡିଲେ। ସେ ବରୀରେ କଂଗ୍ରେସ ଆଶ୍ରମ କରି ଦେଶସେବା କାର୍ଯ୍ୟ କରୁଥାଆନ୍ତି। ଆମ୍ଭେ ବର୍ତ୍ତମାନ ଢେଙ୍କାନାଳର ବାସିନ୍ଦା ହେଲେ ବି ମୂଳତଃ ଯାଜପୁର ବାସୀ। ଆମ ଗାଁ ସାରଙ୍ଗପୁର ନିକଟରେ ବରୀ ଆଶ୍ରମ ହୋଇଥାଏ। ଆମର ସବୁ ବନ୍ଧୁ ବାନ୍ଧବ ଯାଜପୁର ଆଡେ। ବାପା ଯାଜପୁର ଅଞ୍ଚଳରେ ବେଶ୍ ଜଣାଶୁଣା ଓ ପ୍ରଖ୍ୟାତ ଥିଲେ। ଯାଜପୁରର ସେ ହେଉଛନ୍ତି ପ୍ରଥମ ଓଡିଆ ଏମ୍.ଏ, ବି.ଏଲ୍। ଯାଜପୁରରେ ବହୁତ ବଙ୍ଗାଳୀ ଓକିଲ ଥିଲେ। ଯାହା ହେଉ ଯାଜପୁର ଅଞ୍ଚଳରେ ବାପାଙ୍କର ସମ୍ମାନ ବେଶ୍ ଭଲ ଥିଲା। ଇଲେକ୍ସନ ପାଇଁ ଗୋପବାବୁ ବାପାଙ୍କୁ କହିଲେ ଯାଜପୁର ଆସି ଓକିଲାତି କରିବାକୁ ଏବଂ ତା ସଙ୍ଗେ ସଙ୍ଗେ କଂଗ୍ରେସ କାର୍ଯ୍ୟ କରିବାକୁ। ଗୋପବାବୁଙ୍କ ସଙ୍ଗେ କଲେଜ୍ ସମୟର ବନ୍ଧୁତା ପରେ ଗୋପବାବୁ ମଧୁବାବୁଙ୍କ ଝିଅାରୀ ରମାଦେବୀଙ୍କୁ ବିବାହ କଲା ଘଟଣାରୁ ଘନିଷ୍ଠ ହୋଇଥିଲା। ଏହି ଅବସ୍ଥାରେ ବାପା ଗୋପବାବୁଙ୍କ ଡାକରାକୁ ଏଡାଇ ନପାରି ଯାଜପୁର ଗଲେ।

ବାପା ଯାଜପୁର ଗଲାପରେ ଆମ ଘର "କଂଗ୍ରେସ ଧର୍ମଶାଳା" ହେଲା ବୋଲି କୁହାଯାଏ। ଆମ ଭଡାଘର ମୁଖ୍ୟରାସ୍ତା କଡରେ। ଓ୍ୱାର୍ଦ୍ଧା ଓ ଅନ୍ୟ ଜାଗା ମାନଙ୍କରୁ କଂଗ୍ରେସ କର୍ମୀମାନେ ବରୀ ଆଶ୍ରମ ଆସିଲା ସମୟରେ ସେମାନଙ୍କୁ ନିର୍ଦ୍ଦେଶ ଥାଏ ଯେ ସେମାନେ ରାତିରେ ଯାଜପୁର ରୋଡ୍ ଷ୍ଟେସନରେ ଟ୍ରେନ୍‌ରୁ ଓହ୍ଲାଇ ଷ୍ଟେସନ୍ ପ୍ଲାଟଫର୍ମରେ ରହିଯିବେ ଓ ଭୋର ହେବା ପୂର୍ବରୁ ନିଜ ନିତ୍ୟକର୍ମ ସାରି ବାହାରକୁ ଆସି ଯାଜପୁର ଯିବାକୁ ଥିବା ବସ୍ ମାନଙ୍କ ମଧ୍ୟରେ ଯେଉଁ ବସ୍ କଂଗ୍ରେସ୍ ପତାକା ଦ୍ୱାରା ଚିହ୍ନିତ ହୋଇଥିବ ସେଥିରେ ବସିଯିବେ। କଂଗ୍ରେସ ନେତା ଜମିଦାର୍ ଜଗନ୍ନାଥ ଦାସ ଏବଂ ଦ୍ୱାରିକା ନାଥ ଦାସ ଦୁଇ ଭାଇଙ୍କର ଦୁଇଟି ବସ୍ କଂଗ୍ରେସ ପତାକା ଥାଇ ଥାଏ। ପ୍ରସଙ୍ଗତଃ କହିପାରେ ଯେ, ସେ ଦୁଇଭାଇ ମୋ ବୋଉର ମାଉସୀ ପୁଅ ଭାଇ ହିସାବରେ ମୋର ମାମୁଁ ହେବେ। ସେମାନଙ୍କ ସହ ବାପାଙ୍କର ବେଶ୍ ସୌହାର୍ଦ୍ଦ୍ୟ ଥାଏ। ବସ୍ କଣ୍ଡକ୍ଟରଙ୍କୁ ନିର୍ଦ୍ଦେଶ ଥାଏ ସେମାନେ ପଇସା ନନେଇ କଂଗ୍ରେସ କର୍ମୀଙ୍କୁ ଆମ୍ଭ ଘର ଦ୍ୱାର ନିକଟରେ ଓହ୍ଲାଇ ଦେବେ। ବାପା ସାଧାରଣତଃ ରାତି ୪ଟାରୁ ଉଠନ୍ତି । ସେ ଦାଣ୍ଡଘର କବାଟ ଖୋଲି ଦେଇଥାଆନ୍ତି। ଭୋର ଭୋରରୁ କଂଗ୍ରେସ କର୍ମୀମାନେ ବସରୁ ଓହ୍ଲାଇ କଣ୍ଡକ୍ଟରର ନିର୍ଦ୍ଦେଶରେ ଦାଣ୍ଡଘରେ ପଶି, ପଡିଥିବା ସତରଞ୍ଜି ଓ କମ୍ବଳ ଉପରେ ବସି ସୂତାକଟା ଆରମ୍ଭ କରିଦିଅନ୍ତି। ଶବ୍ଦଶୁଣି ମୁଁ, ମୋ ଭଉଣୀ ମାନେ ଓ ଘରେ ରହି ପଢୁଥିବା ପିଲାମାନେ ଆସି ସେମାନଙ୍କର ଚର୍ଚ୍ଚାରେ ଲାଗିଯାଉ। ବାପା ସେମାନଙ୍କ ସଙ୍ଗେ ବସି କଥାବାର୍ତ୍ତା କରନ୍ତି। ସେମାନଙ୍କ ଆବଶ୍ୟକତା ଅନୁସାରେ ପୂର୍ବରୁ ଯୋଗାଡ ହୋଇଥିବା ପଦାର୍ଥ ମାନ ବୋଉ ଓ ବଡ ବୋଉ ଆମକୁ ଦେଲେ ଆମେ ନେଇ ଅତିଥି ମାନଙ୍କୁ ଦେଉ। କିଏ ଗଜାମୁଗ ଓ ଆଖୁ ଗୁଡ ଖାଇବ, ତ କିଏ ଗଜା ବୁଟ, ଖଜୁରୀ ଗୁଡ ଖାଇବ। କିଏ କଞ୍ଚା ଚୁଡା ପାଣି କରି ଅଦା ଓ ଲଙ୍କା ଦେଇ ଖାଇବ, ତ କିଏ ଭଜା ଚୁଡା ଓ ଖଣ୍ଡ ନଡିଆ ମିଶାଇ ଖାଇବ। ଏହି ଧରଣର ଅଦ୍ଭୁତ ପ୍ରକାରର ବରାଦ୍। ଆଗରୁ ସେ ସବୁ ବାପାଙ୍କ ନିର୍ଦ୍ଦେଶ କ୍ରମେ ଯୋଗାଡ ହୋଇଥାଏ। ଏହାପରେ ଆଗରୁ ଟଙ୍କା ଦିଆ ହୋଇ ବରାଦ୍ ହୋଇଥିବା ଶଗଡ ଗାଡିରେ ବରୀକୁ ସେମାନଙ୍କୁ ପଠାଯାଏ। ଏ ଧରଣର ନିତି ଦିନିଆ ସମସ୍ତ ଖର୍ଚ୍ଚ ବାପାଙ୍କ ହାତରୁ ହୁଏ।

ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଜିଣିଲେ । ମ୍ୟୁନିସିପାଲିଟି ନିର୍ବାଚନରେ ବାପା ଜିଣି ଯାଜପୁର ମ୍ୟୁନିସିପାଲିଟିର ଚେୟାରମ୍ୟାନ ହେଲେ ।

ଏହିପରି ଭାବେ ଗୋପବାବୁ, ରମାଦେବୀ ତାଙ୍କ ଝିଅ ଅନ୍ନପୂର୍ଣ୍ଣା ଦେବୀ, ବାଲେଶ୍ୱରର ବାଞ୍ଛାନିଧି ମହାନ୍ତି ଏବଂ ଅନ୍ୟ କେତେକ ନେତା ଯେଉଁ ମାନଙ୍କର ନାମ ବର୍ତ୍ତମାନ ମନେନାହିଁ, ଆମ ଘରର ଅତିଥି ହୋଇଛନ୍ତି । ମୁଁ ଗୋପବାବୁ ଓ ରମାଦେବୀଙ୍କ ଅତି ପ୍ରିୟ ହୋଇଥିଲି ଓ ସେମାନଙ୍କର ଶ୍ରଦ୍ଧା ଓ ଆଦର ବହୁଭାବେ ଅନୁଭବ କରିଛି । ଏଠାରେ ମନେପଡେ ପାଞ୍ଚ ଛଅ ବର୍ଷ ତଳେ ଘଟଣା କ୍ରମେ ଅନ୍ନପୂର୍ଣ୍ଣା ଦେବୀଙ୍କ ସହ ଜଣଙ୍କ ଘରେ ଦେଖା ହୁଏ । ମତେ ତାଙ୍କୁ ଚିହ୍ନାଇ ଦେଲାରୁ ସେ ଭାରି ଖୁସି ହୋଇ କହିଲେ – "ତୁ ବୁଢା ନାଁ ! (ମୋର ଡାକ ନାଁ), ତୁ ବୁଢା ହୋଇ ଗଲୁଣି । ଠିକ୍ ତ ପିଇସାଙ୍କ (ବାପାଙ୍କ) ମୁହଁ ପରି ଦେଖାଯାଉଛି" ।

ବାପାଙ୍କ ଓକିଲାତିର ଢଙ୍ଗ କଥା ଆଗରୁ କହିଛି । ଗାଁର ଜମିବାଡି ଅନ୍ୟ ମାନଙ୍କୁ ଦାନ କଲାପରି ବିକ୍ରୀ ସରିଥିଲା, ଆମେ ଢେଙ୍କାନାଳରେ ରହିଯିବା ପରେ । ମୋ ଜେଜେବାପା ଢେଙ୍କାନାଳରେ ଚାକିରି କରିବା ସମୟରେ କିଛି ଜମିବାଡି ଖରିଦ କରିଥିଲେ । ଢେଙ୍କାନାଳର ଜମିବାଡି ବାପାଙ୍କ ଅନୁପସ୍ଥିତିରେ ତାଙ୍କ ଦାଦା ନିଜ ନାମରେ କରିନେଇଥାଆନ୍ତି । ତେଣୁ ଓକିଲାତିର ଆୟ ଉପରେ ସମସ୍ତ ଖର୍ଚ୍ଚ ନିର୍ଭର କରୁଥିଲା । ଆମ ପରିବାର ଏକ ବିରାଟ ପରିବାର, ବାପା ଓ ଦୁଇ ବଡବାପାଙ୍କ ପରିବାରର ସମସ୍ତେ, ସବୁ ସମୟରେ ପ୍ରାୟ କିଛି ନା କିଛି ବନ୍ଧୁବାନ୍ଧବ ଆସିଥାଆନ୍ତି, ଗରିବ କେତୋଟି ପିଲା ଏବଂ ବନ୍ଧୁବାନ୍ଧବଙ୍କ କେତୋଟି ପିଲା ସବୁ ସମୟରେ ପାଠ ପଢିବାକୁ ଥାଆନ୍ତି । କେବେକେବେ ସାଧୁ ସନ୍ଥମାନେ ମଧ୍ୟ ଆମର ଅତିଥି ହୋଇଥାଆନ୍ତି । ସେଥିପାଇଁ ପାରିବାରିକ ଖର୍ଚ୍ଚ ଯଥେଷ୍ଟ ବେଶୀ ହୁଏ । ତା ସଙ୍ଗେ ସଙ୍ଗେ କଂଗ୍ରେସ କର୍ମୀଙ୍କ ଯିବା ଆସିବା ଖର୍ଚ୍ଚ, ପୁଣି କଂଗ୍ରେସ ମିଟିଙ୍ଗ ପାଇଁ ଓକିଲାତି ସମୟରୁ ସମୟ ନିୟୋଜନ କରିବା ମଧ୍ୟ ଥାଏ । ସେଥିପାଇଁ ଅଭାବ ଯେ ପଡିବ ଏଥିରେ ଭାବିବାର କିଛି ନାହିଁ । ତେଣୁ ମୁଁ ଜାଣେ ବେଳେ ବେଳେ ମର୍ଯ୍ୟାଦା ରକ୍ଷା କରିବା ଉଦ୍ଦେଶ୍ୟରେ ବୋଉର ଦାମି ଦାମି ଗହଣାମାନ ବଜାରରେ ବିକ୍ରୀ କରାନହୋଇ ଗୁପ୍ତରେ ଜଣାବନ୍ଧୁଙ୍କ ମାଧ୍ୟମରେ ଅଳ୍ପ ଦାମରେ ବନ୍ଧା ପଡିବା ପର୍ଯ୍ୟନ୍ତ ଯାଇଛି । କେବେ ତା ମୁକୁଳା ଯାଇଛି ତ କେବେ ବି ହୋଇପାରିନାହିଁ । ଏପ୍ରକାର ଅଦ୍ଭୁତ ଧୈର୍ଯ୍ୟ ସହ ସବୁ ନୀରବରେ ସହ୍ୟ କରି ସମୟ ପାର କରିବା ବେଳେ ବୋଉ ଓ ବଡ ବୋଉ ବ୍ୟସ୍ତ

ହେଲେ, ଶାନ୍ତ ଭାବେ ତାଙ୍କୁ ବୁଝାନ୍ତି – "ଦେଖି ନାହଁ କି ଶୁଣି ନାହଁ, ଦେଶ ସେବାରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ଶେଷକୁ ଦେବାଳିଆ ଘୋଷଣା କରି ନିଜର ଘରବାଡି ନିଲାମ ହେଲାପରେ ମଧ୍ୟ ମଧୁବାବୁ ଓଡିଶା ଗଠନ କାର୍ଯ୍ୟରୁ ଦୂରେଇ ଯାଇ ନଥିଲେ କି ଗରିବଙ୍କୁ ଭୁଲିଯାଇ ନଥିଲେ।" ଜୀବନର ପ୍ରତି ମୁହୂର୍ତ୍ତରେ ମଧୁବାବୁଙ୍କ ଆଦର୍ଶ ଥିଲା ବାପାଙ୍କ ସାନ୍ତ୍ୱନାର ଉତ୍ସ।

ମୋ ଅଜା (ବୋଉର ବାପା) ହେଉଛନ୍ତି ସ୍ୱର୍ଗତଃ ହରେକୃଷ୍ଣ ଦାସ। ଯାଜପୁରର ହରେକୃଷ୍ଣ ଏବଂ ଜଗତସିଂହପୁରର ଶ୍ରୀକୃଷ୍ଣ ମହାପାତ୍ର ମ୍ୟାଟ୍ରିକ ପାସ୍ କରି କଟକ କଲେକ୍ଟରେଟ୍‌ରେ କାର୍ଯ୍ୟ କରୁଥିଲେ, ମାତ୍ର ନିୟମିତ ଭାବେ ନୁହେଁ। ମୋହରିର୍ ମାନଙ୍କ ନିକଟରେ କାର୍ଯ୍ୟ କରନ୍ତି। ଅଫିସ୍‌ରେ କେହି କେହି କିରାଣି ଅଳ୍ପ କି ବହୁତ ଦିନ ଛୁଟିରେ ଗଲେ ସେହି ସମୟପାଇଁ ଅଫିସରେ ସେଦୁହେଁ କାମ କରି କିଛି ପଇସା ପାଆନ୍ତି। ମଧୁବାବୁଙ୍କ ସାନଭାଇ ଗୋପାଳ ବଲ୍ଲଭ ବାବୁ ଡେପୁଟି କଲେକ୍ଟର ଭାବେ ଚାକିରି କଲା ପରେ ଥରେ ମଧୁବାବୁ ତାଙ୍କୁ କହିଲେ – "ଦୁଇଟା ପିଲା ଦିଅନ୍ତୁ ନାହିଁ, ମୋ ସିରସ୍ତାରେ କାମ କରିବାକୁ"। ଗୋପାଳ ବଲ୍ଲଭ ବାବୁ ଏହି ଦୁହିଁଙ୍କୁ ମଧୁବାବୁଙ୍କୁ ଦେଲେ।

ବେଙ୍ଗଲ-ବିହାର-ଓଡିଶା ଏକତ୍ରିତ ହୋଇ ରହିଥିବା ସମୟରେ ଡେପୁଟି କଲେକ୍ଟର କିମ୍ବା ପୋଲିସ୍ ସବ୍-ଇନସ୍‌ପେକ୍ଟର ଓଡିଶାରୁ କେହି ହେଉନଥିଲେ, ବଙ୍ଗାଳୀ ଓ ବିହାରୀଙ୍କ ପ୍ରତିପତ୍ତି ଯୋଗୁଁ। ମଧୁବାବୁ ସରକାରଙ୍କ ସଙ୍ଗେ ଲାଗି ଲାଗି ଓଡିଶା ଡେପୁଟି କ୍ଲେକ୍ଟର୍ କ୍ୟାଡର୍ ସୃଷ୍ଟି କଲାପରେ ପୁଲିସ୍ ଅଫିସର୍ କ୍ୟାଡର କରିବା ପାଇଁ ଯୋରଦାର୍ ଉଦ୍ୟମ କଲେ। ସେତେବେଳେ ସାହେବ ମାନେ ଏସ୍.ପି. ହେଉଥିଲେ। ବାକି ସବ୍-ଇନସପେକ୍ଟର ପାହ୍ୟାରୁ ଇନସପେକ୍ଟର, ଡି.ଏସ୍.ପି. ହେଉଥିଲେ। କେହି କେହି କ୍ୱଚିତ୍ ଏସ୍.ପି. ହେଇପାରୁଥିଲେ। ଓଡିଶା ପାଇଁ ସ୍ୱତନ୍ତ୍ର କ୍ୟାଡର୍ ଭାବେ ସବ୍-ଇନସ୍‌ପେକ୍ଟର ନିଯୁକ୍ତି ନିମନ୍ତେ ପରୀକ୍ଷାର ନୋଟିଫିକେସନ୍ ବାହାରିଲା। ମଧୁବାବୁ ଆଗରୁ ମନେ ମନେ ଏହି ଦୁଇ ଜଣଙ୍କୁ ପରୀକ୍ଷା ପାଇଁ ପ୍ରସ୍ତୁତ କରାଉଥିଲେ। ନୋଟିଫିକେସନ୍ ବାହାରିଲା ପରେ ମଧୁବାବୁ କଲିକତାରେ ଏମାନେ ରହିବାର ବନ୍ଦୋବସ୍ତ କରି, ପଇସା ଦେଇ ଏ ଦୁହିଁଙ୍କୁ କଲିକତା ପଠାଇଲେ ପରୀକ୍ଷା ଦେବାପାଇଁ। ହରେକୃଷ୍ଣ ଓ ଶ୍ରୀକୃଷ୍ଣ ପ୍ରଥମ ଓ ଦ୍ୱିତୀୟ ହୋଇ ପାସ୍ କଲେ। ପରେ ଏ ଦୁହେଁ ଏସ୍.ପି. ହୋଇ ପାରିଥିଲେ।

ପ୍ରଥମେ ହରେକୃଷ୍ଣ ଏସ୍.ପି. ହୋଇ କଳାହାଣ୍ଡିର ପୁଲିସ୍ କମିଶନର୍ ହୋଇଥିଲେ। ସେ ଉଚ୍ଚକୋଟୀର ଲୋକପ୍ରିୟ ଅଫିସର ଥିଲେ। ତାଙ୍କ ନାମରେ ଭବାନୀପାଟଣା ଟାଉନ୍ ମୁଖ୍ୟ ରାସ୍ତାର ଏକ ଛକରେ ତାଙ୍କ ସ୍ମୃତି ସ୍ତମ୍ଭ ଏପର୍ଯ୍ୟନ୍ତ ଅଛି ବୋଲି ଶୁଣିବାକୁ ମିଳେ। ହରେକୃଷ୍ଣଙ୍କ ପରେ ଶ୍ରୀକୃଷ୍ଣ କଟକର ପୁଲିସ କମିଶନର ହୋଇଥିଲେ।

ହରେକୃଷ୍ଣ କଳାହାଣ୍ଡିରେ ପୁଲିସ କମିଶନର ଥିଲା ବେଳେ ବିଚିତ୍ରାନନ୍ଦ ଦାସ ଓ ମଧୁବାବୁଙ୍କ ସୁପାରିଶ ଅନୁସାରେ ତାଙ୍କର ଜ୍ୟେଷ୍ଠା କନ୍ୟା ମନୋରମାଙ୍କୁ ବାପାଙ୍କ ସହ ବିବାହ ଦେଇଥିଲେ।

ଏହିପରି ଭାବେ ପିତା ଓ ମାତାଙ୍କ ଆଡୁ ମଧୁବାବୁଙ୍କ ସଙ୍ଗେ ମୋର ଆତ୍ମୀୟତା ଓ ଭାବଗତ ସଂପର୍କ। ଏହି ଦୃଷ୍ଟିରୁ ଓଡିଆ ଜାତିର ମଧୁବାବୁଙ୍କ ପ୍ରତି କୌଣସି ପ୍ରକାର ଇଚ୍ଛାକୃତ ବା ଅନିଚ୍ଛାକୃତ ଅବହେଳା ତଥା ଅମର୍ଯ୍ୟାଦା ନିମନ୍ତେ ମୋ ପ୍ରାଣରେ ସବୁ ସମୟରେ ଭୀଷଣ ଆଘାତ ପ୍ରାପ୍ତ ହୋଇଛି। କ୍ଷୁଦ୍ର ଜୀବ ଭାବେ ସେ ଦୁଃଖର ଅପନୋଦନ ନିମନ୍ତେ କିଛି କରିବାର କ୍ଷମତା ତ ମୋର ନାହିଁ। ବରଂ ଅନ୍ୟମାନଙ୍କର ଲେଖାଲେଖି ପଢି ଏବଂ ବାପାଙ୍କ ଠାରୁ ଶୁଣିଥିବା କଥାମାନ ଭାଳି ଦୁଃଖରେ ସବୁ ସମୟରେ ମ୍ରିୟମାଣ ହୋଇଛି।

ଏହି କାରଣରୁ ଶ୍ରୀବଲ୍ଲଭ ବାବୁଙ୍କ ଲେଖାଟି ମୋ ପ୍ରାଣକୁ ଏପରି ଗଭୀର ଭାବେ ସ୍ପର୍ଶ କରିଥିଲା ଯାହାର ଫଳ ସ୍ୱରୂପ ଏ ଲେଖାଟିର ଅବତାରଣା।

ଏହି ଲେଖାଟି ଲେଖିଲା ବେଳେ ମୋର ପରିଚିତ ଦୁଇଜଣ ବିଶିଷ୍ଟ ମଧୁପ୍ରେମୀ ଶ୍ରୀ ସୁରସିଂହ ପଟ୍ଟନାୟକ ଓ ଡ. ଗୋପାଳକୃଷ୍ଣ ଶ୍ରୀଚନ୍ଦନଙ୍କ ଦ୍ୱାରା ବହୁ ଭାବେ ସାହାଯ୍ୟ ପ୍ରାପ୍ତ ହୋଇଥିବାରୁ ମୁଁ ସେମାନଙ୍କ ନିକଟରେ ଚିର କୃତଜ୍ଞ।

ଏ ପୁସ୍ତିକାଟିକୁ ଛପାଇ ପୁସ୍ତିକା ଆକାରରେ ପ୍ରକାଶ କରିଥିବାରୁ ମୋ କନିଷ୍ଠ ପୁତ୍ର ଅରୂପାନନ୍ଦ ଆଶୀର୍ବାଦାର୍ହ।

ବନ୍ଦେ ଉତ୍କଳ ଜନନୀ।
ସଚ୍ଚିଦାନନ୍ଦ ଦାସ
୨୮ ଏପ୍ରିଲ, ୨୦୧୦

# ବିସ୍ମୃତିର ଚକ୍ରବ୍ୟୁହ ମଧ୍ୟରେ ଓଡିଆ ଜାତିର ଜନକ ମଧୁସୂଦନ ଦାସ

ମୁଁ (ଏହି ଲେଖକ)ଜଣେ ଓଡିଆ। ଓଡିଆତ୍ୱର ଅସ୍ମିତା ହୃଦୟ ମଧ୍ୟରେ ଗର୍ବ ସୃଷ୍ଟି କରେ। କିନ୍ତୁ ଯେତେବେଳେ ଦେଖେ ସର୍ବଭାରତୀୟ ସ୍ତରର ସମୀକ୍ଷାରେ ଓଡିଶା ରାଜ୍ୟ ଦେଶର ଦରିଦ୍ରତମ ରାଜ୍ୟ,ରାଜନେତା ମାନେ ଦରିଦ୍ର ରାଜ୍ୟର ଶାସକ ଭାବେ କେନ୍ଦ୍ର ନିକଟରେ ଭିକ୍ଷା ଥାଳଧରି ପ୍ରତ୍ୟାଖ୍ୟାତ ହୁଅନ୍ତି, କେହି କେହି ଶିକ୍ଷିତ ଓଡିଆ କହିବାକୁ ମଧ୍ୟ ପଛାନ୍ତି ନାହିଁ ଯେ, ଓଡିଶାରେ କିଛି ନଥିଲା, ଏବେ ବି କିଛି ନାହିଁ, ଭବିଷ୍ୟତରେ କିଛି ହେବ ନାହିଁ ସେ ଅସ୍ମିତା ମଉଳି ଯାଏ । ସେତେବେଳେ ମନରେ ଜାଗି ଉଠେ ଓଡିଶାରେ କ'ଣ ନଥିଲା ଓ ଅତୀତର ଏହି ଓଡିଶା, ଓଡ୍ର, କଳିଙ୍ଗ, ଉତ୍କଳ, ଦେଶର ଗୌରବମୟ, ସମୃଦ୍ଧିଶାଳୀ, ବୀରତ୍ୱପୂର୍ଣ୍ଣ ଇତିହାସର ଗାଥା । ପ୍ରାକ୍ ଐତିହାସିକ ସତ୍ୟ ଯୁଗରେ ଲିଖିତ କପିଳ ସଂହିତାରେ ଉଲ୍ଲେଖ ଅଛି - "ବର୍ଷାଣାଂ ଭାରତ ଶ୍ରେଷ୍ଠୋ, ଦେଶାନାମୁତ୍କଳଃ ଶ୍ରୁତ,ଉତ୍କଳସ୍ୟ ସମୋଦେଶୋ ଦେଶୋନାସ୍ତି ମହୀତଳେ"। ତ୍ରେତୟା ଯୁଗରେ ରଘୁନନ୍ଦନ ପୁରାଣରେ ଲିଖିତ ଅଛି "ତତ୍ରାସ୍ତେ ଭାରତ ବର୍ଷେ ଦକ୍ଷିଣୋଦଧି ସଂସ୍ଥିତଃ, ଓଡ୍ର ଦେଶ ଇତି ଖ୍ୟାତଃ ସ୍ୱର୍ଗ ମୋକ୍ଷ ପ୍ରଦାୟକଃ" । ଦ୍ୱାପର ଯୁଗରେ ମହାଭାରତରେ କଳିଙ୍ଗର ବୀରତ୍ୱ ବହୁଭାବେ ବର୍ଣ୍ଣିତ । କଳିଙ୍ଗ ଦେଶର ଶାସନ ଅତି ସୁଦୃଢ ଓ ଦେଶ ସମୃଦ୍ଧିଶାଳୀ ଥିବାରୁ କଳାତ୍ମକ ଉତ୍କର୍ଷ ଝଟକୁଥିଲା। କଳିଙ୍ଗର ସୂକ୍ଷ୍ମ ବସ୍ତ୍ର ଓ ହସ୍ତଶିଳ୍ପର ଦ୍ରବ୍ୟ ପ୍ରସିଦ୍ଧି ଲାଭ କରିଥିଲା। କଳିଙ୍ଗ ରାଜ୍ୟର ସ୍ଥିତି ଓ ସମ୍ମାନ ଏତେ ଉଚ୍ଚକୋଟୀର ଥିଲାଯେ କଳିଙ୍ଗ ରାଜକନ୍ୟା ଭାନୁମତୀଙ୍କୁ ଦୂର୍ଯୋଧନ ବିବାହ କରିଥିଲେ।

କଳିଙ୍ଗର ଐତିହ୍ୟ ଓ ଗୌରବ କଳିଯୁଗକୁ ମଧ୍ୟ ବ୍ୟାପ୍ତ ଥିଲା। "ଓଡ୍ରବିଭାଷା" କହୁଥିବା କଳିଙ୍ଗ, ଉତ୍କଳ, କଙ୍ଗୋଦ, କୋଶଳ ଆଦି ରାଜ୍ୟ

ସମୂହ ଭାବଗତ, ଜାତିଗତ ତଥା ସଂସ୍କୃତିଗତ ସମନ୍ୱୟ ଓ ସମାହାରରେ ଓଡିଶାର ଉତ୍ପତ୍ତି। ସମ୍ବଲପୁର ତତ୍କାଳୀନ କୋଶଳର ଅଙ୍ଗ ବିଶେଷ ଥିଲା। ମହାନଦୀ ରତ୍ନଗର୍ଭରେ ପାନ୍ନା, ପଦ୍ମପୁରୀ, ନୀଳମଣି, ରକ୍ତମଣି, ସ୍ଫଟିକ, ପୋଖରାଜ୍ ଆଦି ବହୁ ପରିମାଣରେ ମିଳୁଥିଲା। ସମ୍ବଲପୁରର ହୀରା ପୃଥିବୀ ପ୍ରସିଦ୍ଧ ଥିଲା। କୋହିନୁର ହୀରା ସମ୍ବଲପୁରର ବୋଲି କଥିତ ହୁଏ। ସ୍ୱୟଂ କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ "ଚଣ୍ଡେଶ୍ୱର ରତ୍ନ ପରୀକ୍ଷାରେ" ଉଲ୍ଲେଖ କରିଛନ୍ତି "କୋଶଳେ ଚ କଳିଙ୍ଗେ ଚ ମାତଙ୍ଗେ ଚ ହିମାଳୟ"।

ଇତିହାସ ମଧ୍ୟ କହେ, ଖ୍ରୀଷ୍ଟପୂର୍ବ ୩ୟ-୪ର୍ଥ ଶତାବ୍ଦୀରେ କଳିଙ୍ଗର ନୌବାଣିଜ୍ୟ ୟୁରୋପ୍, ଆଫ୍ରିକା, ଉତ୍ତର ପୂର୍ବ ଏସିଆ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା। ବଣିକ ମାନଙ୍କର ନୌକାକୁ ସୁରକ୍ଷା ଦେବା ନିମନ୍ତେ କଳିଙ୍ଗର ବିରାଟ ନୌସେନା ସକ୍ଷମ ହେଉଥିଲା। ଇଂରେଜ ଶାସନ ସମୟରେ ମୟୁରଭଞ୍ଜ ଡେପୁଟି କମିଶନର ବେଗରାଲ୍ ସାହେବ୍ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀର ରୋମାନ୍ ସମ୍ରାଟଙ୍କର ଛବିଥିବା ସ୍ୱର୍ଣ୍ଣ ମୁଦ୍ରା ସଂଗ୍ରହ କରି ବ୍ରିଟିଶ ଦରବାରକୁ ପଠାଇଥିଲେ । କଳିଙ୍ଗର ବୀରତ୍ୱ ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରିଥିଲା। କଳିଙ୍ଗ ସମ୍ରାଟ ଖାରବେଳ ଭାରତ ଜୟ କରିଥିଲେ। ଖାରବେଳଙ୍କ ପରେ କଳିଙ୍ଗ ଦୁର୍ବଳ ହୋଇଗଲା। କଳିଙ୍ଗର ପରିଚୟ ଇତିହାସର ସୈକିକ ଶଯ୍ୟାରେ ନିଷ୍ପ୍ରଭ ହୋଇଗଲା। ଉତ୍କଳର ଦୁନ୍ଦୁଭି ସମୟର ଆହ୍ୱାନରେ ପୁଣି ଗର୍ଜି ଉଠିଲା । ଉତ୍କଳର ରାଜା ପୁନର୍ବାର ବୀରତ୍ୱର ପରାକାଷ୍ଠାରେ ଗଙ୍ଗା ଠାରୁ ଗୋଦାବରୀ, କୃଷ୍ଣା, କାବେରୀ ପର୍ଯ୍ୟନ୍ତ ବିଶାଳ ସାମ୍ରାଜ୍ୟ ଗଠନ କରିଥିଲେ। ପରେ ଆଫଗାନ୍, ପଠାଣ, ମୋଗଲ୍, ମରହଟ୍ଟା ମାନଙ୍କର ଘନ ଘନ ଆକ୍ରମଣ ସମୟରେ ଓଡିଶାର ଶାସକମାନେ ଏହାକୁ ପ୍ରତିହତ କରିବାରେ ଦୁର୍ବଳ ହୋଇଯିବାରୁ ଓଡିଶାର ଭାଗ୍ୟରବି ଅସ୍ତଗାମୀ ହେବାକୁ ଆରମ୍ଭ କଲା। ଶେଷରେ ୧୮୦୩ ମସିହାରେ ଇଂରେଜମାନଙ୍କର ଓଡିଶା ଅଧିକାର ସମୟରେ ଓଡିଶାର ସ୍ୱାଧୀନତାର ସୂର୍ଯ୍ୟ ଅସ୍ତମିତ ହେବା ସମୟରେ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ପ୍ରଭୃତି ଓଡିଶାର ବୀର ରକ୍ତର ପରିଚୟ ଦେଇଥିଲେ । ଭାରତର ଅନ୍ୟ ସମସ୍ତ ରାଜ୍ୟ ଜୟ କଲାପରେ ଶେଷରେ

ଓଡିଶା ଜୟ କରିବାକୁ ତୋପ କମାଣର ସାହାଯ୍ୟ ଯଥେଷ୍ଟ ନଥିବା ଅନୁଭବ କରି କୂଟନୀତି ବିଶାରଦ ଇଂରେଜ ମାନଙ୍କୁ ଶଠତା ଏବଂ ନିମକ-ହାରାମୀ ଜାଗିରିର ପ୍ରଲୋଭନ ଉପଯୋଗ କରିବାକୁ ପଡିଥିଲା । ସେଥିପାଇଁ ଏ ଦୁର୍ଦ୍ଦାନ୍ତ ଶୌର୍ଯ୍ୟବୀର୍ଯ୍ୟଶାଳୀ ଓଡିଆ ଜାତିର ମେରୁଦଣ୍ଡ ଭାଙ୍ଗିବା ଉଦ୍ଦେଶ୍ୟରେ ଇଂରେଜମାନେ ଓଡିଶାକୁ ଖଣ୍ଡବିଖଣ୍ଡିତ କରି ଭିନ୍ନ ଭିନ୍ନ ରାଜ୍ୟରେ ସାମିଲ କରିଦେଇଥିଲେ। ଗୋଟେ ରାଜ୍ୟର ମୂଳ ପିଣ୍ଡ ତାର ଭାଷା। ତେଣୁ "ଓଡିଆ ଗୋଟେ ଭାଷା ନୁହେଁ" ବୋଲି କହି ତାର ଲୋପ ସାଧନ କରିବାରେ ବଙ୍ଗାଳୀମାନେ ଚେଷ୍ଟା ଚଳାଇଲେ। କିନ୍ତୁ ସେତେବେଳେ ମଧ୍ୟ ଅର୍ଦ୍ଧମୃତ ଓଡିଆ ଜାତିର ଦାୟାଦ ଭାବେ ବିଚିତ୍ରାନନ୍ଦ ଦାସ,ଗୌରୀ ଶଙ୍କର ରାୟ, ଫକୀରମୋହନ ସେନାପତି, ଗଙ୍ଗାଧର ମେହେର ପରି ପ୍ରାଣଶୂନ୍ୟ ଓ କଙ୍କାଳ ସାର ହୋଇ ମଧ୍ୟ ନାଚି ଉଠିଥିଲା ।

ଏ ପୁଣ୍ୟଭୂମି ପୁରୁଷୋତ୍ତମ ରାଜ୍ୟର ପୁନଃ ଜାଗରଣ ନିମନ୍ତେ ଜଗନ୍ନାଥ ମହାପ୍ରଭୁ ଜନ୍ମ ଦେଇଥିଲେ ଅତୀବ ମେଧାବୀ କର୍ମବୀର ଦଧୀଚି ସଦୃଶ ସାଧନ ସିଦ୍ଧ ମଧୁସୂଦନ ଦାସଙ୍କୁ । ସେ ହେଲେ ଓଡିଆ ଜାତିର ନୂତନ ପ୍ରାଣ କେନ୍ଦ୍ର । ମୃତ ପ୍ରାୟ ଜାତିର ପ୍ରାଣରେ ନୂତନ ଜୀବନ ସଂଞ୍ଚାର କରି ଗଢିଲେ "ଉତ୍କଳ ସଭା" । ତେଜିଲେ ସମର୍ଥ ଓଡିଆ କାରିଗରୀର ଆଭା। ତେର ନଦୀ ସାତ ସମୁଦ୍ର ପାର ହୋଇଗଲେ ବିଲାତ, ସେଠାରେ ଲଢିକରି ଆଣିବା ପାଇଁ ଓଡିଶା ସ୍ୱତନ୍ତ୍ର ରାଜ୍ୟ, ଓଡିଶାର ଅତୀତର କଳା, ସଂସ୍କୃତି, ବୀରତ୍ୱ ଏବଂ ସମୃଦ୍ଧିର ପରିଚୟ ଦେଇ । ଶେଷରେ ନିଜକୁ ତିଳ ତିଳ କରି ଆହୁତି ଦେଇ ଗଢିଲେ ଓଡିଶା ରାଜ୍ୟ । ଖାରବେଳ, ଅନନ୍ତବର୍ମ ଚୋଡଗଙ୍ଗଦେବ, କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ, ପ୍ରତାପରୁଦ୍ର ଦେବ ପ୍ରଭୃତି ଓଡିଶାର ପରାକ୍ରମୀ ରାଜାମାନେ ନିଜର ଶୌର୍ଯ୍ୟବୀର୍ଯ୍ୟ ପ୍ରଦର୍ଶନ କରି ଅନ୍ୟ ରାଜ୍ୟ ଜୟ କରିବା ନିମନ୍ତେ ତାଙ୍କର ବିରାଟ ଶକ୍ତିଶାଳୀ ଓଡିଆ ସେନାବାହିନୀର ଭୟ ପ୍ରଦାନକାରୀ ରଣହୁଙ୍କାର ଥିଲା। କିନ୍ତୁ ଅପହୃତ ଓଡିଶାକୁ ଉଦ୍ଧାର କରି ଲୁପ୍ତ ପ୍ରାୟ ଓଡିଆ ଜାତିର ଓଡିଆତ୍ୱର ଅଭ୍ୟୁଦୟ ନିମନ୍ତେ ନିଜର ଏକକ ଧୀଶକ୍ତି ଓ ବିଚାର ମାଧ୍ୟମରେ ନିଜର ସର୍ବସ୍ୱ ତ୍ୟାଗ କରି ଓ ନିଃସ୍ୱ ଅବସ୍ଥାରେ

ଏବଂ ଧୈର୍ଯ୍ୟର ସହ କେତେକ ସ୍ୱାର୍ଥନ୍ୱେଷୀ ହୀନମତି ଜାତି ଭାଇଙ୍କର ଆକଣ୍ଠ ବିରୋଧକୁ ପ୍ରତିହତ କରି, ସୁପ୍ତ ଓଡିଆଙ୍କର ନୀରବତା ମଧ୍ୟରେ ନିଜର ଶେଷ ନିଃଶ୍ୱାସ ତ୍ୟାଗ କଲା ପର୍ଯ୍ୟନ୍ତ ଯୁଦ୍ଧ କରି ମଧୁବାବୁ ସଫଳକାମ ଏବଂ ଜୟଯୁକ୍ତ ହୋଇଥିଲେ । ସେଥିପାଇଁ ଏ ଅକିଞ୍ଚନ ଲେଖକର ମତରେ ସେ ସବୁ ମହାନ୍ ରାଜା ମାନଙ୍କ ଠାରୁ ମଧୁବାବୁ ବହୁଗୁଣରେ ମହୀୟାନ ଥିଲେ । କାରଣ ସେ ଧନଶାଳୀ ରାଜା ମାନଙ୍କ ନିମନ୍ତେ ଦୁର୍ଦ୍ଧର୍ଷ ଓଡିଆ ସୈନ୍ୟ ବାହିନୀର ରଣହୁଙ୍କାର ଥିଲା ବେଳେ, ଓଡିଶା ପାଇଁ ନିଃସ୍ୱ ହୋଇଥିବା ମଧୁବାବୁଙ୍କ ପାଇଁ ଥିଲା ପ୍ରାଣହୀନ ଓଡିଆ ଜାତିର ନିଃସ୍ପୃହ ନିଃସ୍ପନ୍ଦତା ।

ଓଡିଶା ରାଜ୍ୟ ଗଠନ ନିମନ୍ତେ ସେ ନିଜକୁ ଉତ୍ସର୍ଗୀକୃତ ଭାବେ ନିୟୋଜିତ କରିଥିଲେ ମଧ୍ୟ ସେ ମହାଭାରତୀୟ ଭାବରେ ଉଦ୍‌ବୁଦ୍ଧ ଥିଲେ । ସେଥିପାଇଁ ସେ ପ୍ରଥମରୁ ଜାତୀୟ କଂଗ୍ରେସରେ ଯୋଗଦାନ କରିଥିଲେ । କିନ୍ତୁ ସେ ଅନୁଷ୍ଠାନର ସେ ସମୟରେ ଭିନ୍ନ ଭିନ୍ନ ରାଜ୍ୟର ସଂଖ୍ୟାଧିକ ତୁଙ୍ଗ ନେତୃମଣ୍ଡଳୀ ମହାଭାରତୀୟ ଭାବର କଥା ତୁଣ୍ଡରେ କହୁଥିଲେ ମଧ୍ୟ ଅନ୍ତର ମଧ୍ୟରେ ଥିଲେ ନିଜ ନିଜ ରାଜ୍ୟର ସ୍ୱାର୍ଥାନ୍ୱେଷୀ । ସେମାନେ ମଧୁବାବୁଙ୍କ ଭାଷା ଭିତ୍ତିରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନକୁ ତୀବ୍ର ବିରୋଧ କଲେ । ସେଥିପାଇଁ ସେ ନିଜର ଏକକ ସୁଚିନ୍ତିତ ବିଚାର ଧାରାରେ ଓଡିଶା ପ୍ରଦେଶ ଗଠନ କରିବାକୁ ସକ୍ଷମ ହୋଇଥିଲେ, ଯଦିଓ ଅନେକ ଓଡିଆ ଅଞ୍ଚଳ ବାହାରେ ରହିଗଲା । ଅବଶ୍ୟ ତାହା ଆସିପାରିଥାନ୍ତା ଯଦି ଦଳମତ ନିର୍ବିଶେଷରେ ସମସ୍ତ ଓଡିଆ ଏକପ୍ରାଣ ହୋଇ ଲାଗିଥାଆନ୍ତେ, ଠିକ୍ ଆନ୍ଧ୍ର ମାନଙ୍କ ପରି ଆନ୍ଧ୍ରପ୍ରଦେଶ ଗଠନକରିବା ନିମନ୍ତେ ।

ଜାତୀୟ କଂଗ୍ରେସର ବଡ ବଡ ସ୍ୱାର୍ଥାନ୍ୱେଷୀ ନେତାମାନଙ୍କର ଜୟଗାନ କରି ଓଡିଶା ପ୍ରଦେଶ ଗଠନ କାର୍ଯ୍ୟରେ ବିରୋଧ କରୁଥିବା ଓଡିଶାର କଂଗ୍ରେସ ନେତାମାନେ ଦେଖିଲେ ଓଡିଶା ପ୍ରଦେଶ ଗଠନ ହୋଇଯିବା ପରେ ଓଡିଶାରେ ସେମାନଙ୍କର ବଡିମା ମ୍ଳାନମୁଖୀ ହୋଇଯାଉଛି, ମଧୁବାବୁଙ୍କର ନାମର ଔଜ୍ଜ୍ୱଲ୍ୟ ସମ୍ମୁଖରେ । ତେଣୁ ମଧୁବାବୁଙ୍କ ମୃତ୍ୟୁପରେ ସେହି କଂଗ୍ରେସ

ନେତାମାନେ ଓଡିଶା ଶାସନ ଗାଦି ଉପଭୋଗ କରି ଶାସନ ତନ୍ତ୍ରର ମଙ୍ଗଧରି ମଧୁବାବୁଙ୍କୁ ଓଡିଶା ଇତିହାସରୁ ବିସ୍ମୃତ କରିଦେବା ଉଦ୍ଦେଶ୍ୟରେ ଯୋଜନାବଦ୍ଧ ଭାବେ କାର୍ଯ୍ୟକରି ଚାଲିଲେ ।

ବାବୁ ଶ୍ରୀବଲ୍ଲଭ ପାଣଗ୍ରାହୀଙ୍କର ବୀର ସୁରେନ୍ଦ୍ର ସାଏଙ୍କ ପ୍ରତି ଓଡିଶା ସରକାର ଏବଂ କେନ୍ଦ୍ର ସରକାରଙ୍କର ଅବହେଳା ବିଷୟରେ ଲେଖାଟି ପଢି ମଧୁବାବୁଙ୍କ ପ୍ରତି ଯେଉଁ ଅବହେଳା, ଅବମାନନା ଏବଂ ଅପମାନ କରାଯାଇ ଚାଲିଛି, ତାହା ଭାବି ମନରେ ବିଶେଷ ଆଘାତ ପ୍ରାପ୍ତ ହେଲି । ଯେଉଁ ମଧୁବାବୁଙ୍କ ଯୋଗୁଁ ଓଡିଆ ଜାତିର ଦାୟାଦ ଭାବେ ଆଜି ବି ମନରେ ଏକ ଅସ୍ମିତାର ଭାବ ଜାଗି ଉଠୁଛି, ସେହି ମଧୁବାବୁଙ୍କୁ ଇତିହାସର ସ୍ମୃତିରୁ କିପରି ବିଲୁପ୍ତ କରାଯାଇ ପାରିବ ସେଥି ନିମନ୍ତେ କଂଗ୍ରେସ ନେତୃବୃନ୍ଦ କିପରି "ଚକ୍ରବ୍ୟୁହ" ରଚନା କରିଚାଲିଛନ୍ତି, ତାହାହିଁ ପ୍ରକାଶ କରିବାକୁ ବିକ୍ଷୁବ୍ଧ ପ୍ରାଣର ବିସ୍ଫୋରଣ ଏହି ଆଲେଖ୍ୟ ।

ଶ୍ରୀବଲ୍ଲଭ ପାଣିଗ୍ରାହୀ ବାବୁଙ୍କ ବିପ୍ଳବୀ ବୀର ସୁରେନ୍ଦ୍ର ସାଏଙ୍କ ଦ୍ୱିଶତ ଜନ୍ମବାର୍ଷିକୀ ଉପଲକ୍ଷେ ଲିଖିତ ପ୍ରବନ୍ଧଟି ୨୧ ଓ ୨୨ ଜାନୁୟାରୀ ୨୦୦୯, "ସମାଜ"ରୁ ପଢି ବୀର ସୁରେନ୍ଦ୍ର ସାଏଙ୍କ ବିଷୟରେ ଆଗରୁ ଜାଣିନଥିବା ଅନେକ କଥା ଜାଣିବାକୁ ପାଇ ନିଜକୁ ଭାଗ୍ୟବାନ ମନେକଲି । ତାଙ୍କ ସ୍ମୃତି ପ୍ରତି ଯଥା-ଯଥ ସମ୍ମାନ ପ୍ରଦର୍ଶନ ରାଜ୍ୟସ୍ତରରେ ଏବଂ ଜାତୀୟସ୍ତରରେ ହେଉନଥିବାରୁ ସେ ଦୁଃଖ ଏବଂ କ୍ଷୋଭ ପ୍ରକାଶ କରି ଏହା ଲଜ୍ଜାର ବିଷୟ ବୋଲି ଉଲ୍ଲେଖ କରିଛନ୍ତି । ବାସ୍ତବିକ ଏହା ଓଡିଆ ଜାତିର ଅପକୀର୍ତ୍ତି ।

ତଥାପି ପାଣିଗ୍ରାହୀ ବାବୁଙ୍କ ଲେଖାରୁ ଜଣାଯାଏ, ୧୯୫୪ ମସିହାରେ ସମ୍ବଲପୁର ଠାରେ ପ୍ରାଦେଶିକ କଂଗ୍ରେସ ପାର୍ଟିର ମିଟିଂ ସ୍ଥାନକୁ "ସୁରେନ୍ଦ୍ର ସାଏ ନଗର" ରୂପେ ନାମିତ କରାଯାଇଥିଲା ଏବଂ ସେଠାରେ ତାଙ୍କର ତୈଳ ଚିତ୍ରରେ ଜବାହରଲାଲ ନେହେରୁ ଫୁଲମାଳ ଦେଇ ତାଙ୍କର ବହୁ ପ୍ରଶଂସା କରିଥିଲେ । ୧୯୫୯ ମସିହାରେ ବୁର୍ଲା ମେଡିକାଲ କଲେଜକୁ ସୁରେନ୍ଦ୍ର ସାଏଙ୍କ ନାମରେ ନାମିତ କରାଯାଇଥିଲା ଏବଂ ସେଠାରେ ସୁରେନ୍ଦ୍ର ସାଏଙ୍କର ଏକ ଘୋଡସବାର ବ୍ରୋଞ୍ଜ ପ୍ରତିମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା ।

୧୯୭୭ ମସିହାରେ ସୁରେନ୍ଦ୍ର ସାଏଙ୍କର କର୍ମକ୍ଷେତ୍ର ବରଗାଁରେ ଏକ ଆବକ୍ଷ ମୂର୍ତ୍ତି ରାଜ୍ୟପାଳ ଉନ୍ମୋଚନ କରିଥିଲେ । ୧୯୭୮ରେ ସରକାର ରାଜଧାନୀ ଭୁବନେଶ୍ୱରରେ ଏକ କଲୋନିକୁ ସୁରେନ୍ଦ୍ର ସାଏ ନଗର ଭାବେ ନାମିତ କରି ସେଠାରେ ଏକ ଆବକ୍ଷ ମୂର୍ତ୍ତି ପ୍ରତିଷ୍ଠା କରିଥିଲେ । ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ୧୯୮୪ରେ ସୁରେନ୍ଦ୍ର ସାଏଙ୍କ ମୃତ୍ୟୁ ଶତବାର୍ଷିକୀ କମିଟି ଗଠନ କରାଯାଇ ସରକାରଙ୍କ ତରଫରୁ ରାଜ୍ୟସ୍ତରୀୟ ସ୍ମାରକୀ ଉତ୍ସବ ପାଳନ କରାଗଲା । ସମ୍ବଲପୁର ଷ୍ଟାଡିୟମକୁ ସୁରେନ୍ଦ୍ରଙ୍କ ନାମରେ ନାମିତ କରାଗଲା । ଜେଲ ଛକରୁ ଲକ୍ଷ୍ମୀଟକିଜ୍ ଛକ ପର୍ଯ୍ୟନ୍ତ ରାଜ ରାସ୍ତାକୁ ସୁରେନ୍ଦ୍ରଙ୍କ ନାମରେ ନାମିତ କରାଗଲା । ସେହି କମିଟିର ନିଷ୍ପତ୍ତି କ୍ରମେ ୧୯୮୫ ମସିହାରେ ସେହି ଛକ ଠାରେ ଏକ ବ୍ରୋଞ୍ଜ ପ୍ରତିମୂର୍ତ୍ତି ରାଜ୍ୟପାଳ ଉନ୍ମୋଚନ କଲେ । କେନ୍ଦ୍ର ସରକାରଙ୍କ ତରଫରୁ ଏକ ସ୍ମାରକୀ ଡାକ ଲଫାପାର ଲୋକାର୍ପଣ କରାଗଲା ଏବଂ କିଛିକାଳ ପରେ ଏକ ସ୍ମାରକୀ ଡାକଟିକଟ ପ୍ରକାଶ ପାଇଲା । ବର୍ଷ ସାରା ଶତବାର୍ଷିକୀ ଉତ୍ସବ ଶିକ୍ଷା ଅନୁଷ୍ଠାନ ମାନଙ୍କଠାରୁ ଆରମ୍ଭକରି ବହୁ ବିବିଧ ଅନୁଷ୍ଠାନ, ବ୍ୟବସାୟ ପ୍ରତିଷ୍ଠାନ, ଯୁବ ଓ କ୍ରୀଡା ସଂଘ ପ୍ରତିଷ୍ଠାନ ପ୍ରଭୃତିକୁ ସୁରେନ୍ଦ୍ରଙ୍କ ନାମରେ ନାମିତ କରାଗଲା । ବେଲପାହାଡ ଠାରେ ଏକ ପୂର୍ଣ୍ଣାବୟବ ବ୍ରୋଞ୍ଜ ପ୍ରତିମୂର୍ତ୍ତି ସ୍ଥାପନ କରାଗଲା । ଏବେ ନିକଟରେ ବୁର୍ଲାସ୍ଥିତ ବିଶ୍ୱବିଦ୍ୟାଳୟ ଇଂଜିନିୟରିଂ କଲେଜକୁ ସୁରେନ୍ଦ୍ରଙ୍କ ନାମରେ ନାମିତ କରାଯାଇଛି ।

ଏ ସବୁ ଉଲ୍ଲେଖ କଲାପରେ ଶେଷରେ ପାଣିଗ୍ରାହୀ ବାବୁ ଲେଖିଛନ୍ତି, ଦୁଃଖର କଥାଯେ ଏ ପର୍ଯ୍ୟନ୍ତ ସୁରେନ୍ଦ୍ରଙ୍କ ସ୍ମୃତି ରକ୍ଷାର୍ଥେ ଯାହା ବି ଉଦ୍ୟମ ହୋଇଛି, ତାଙ୍କ ମର୍ଯ୍ୟାଦା ତଥା ପ୍ରତିଷ୍ଠା ଅନୁରୂପ ହୋଇନାହିଁ ! ସେ ଲେଖିଛନ୍ତି ସଂସଦ ଭବନ ପରିସରରେ ସୁରେନ୍ଦ୍ରଙ୍କ ପ୍ରତିମୂର୍ତ୍ତି ସ୍ଥାପନ ପାଇଁ ସ୍ଥାନର ଅଭାବ ଥିବା ଆଳରେ ତୈଳଚିତ୍ର ସ୍ଥାପନ ପରାମର୍ଶ ଗ୍ରହଣୀୟ ନୁହେଁ । ଦିଲ୍ଲୀର ଏକ ରାଜରାସ୍ତା ସୁରେନ୍ଦ୍ରଙ୍କ ନାମରେ ନାମିତ ହେବାକୁ ଉଦ୍ୟମ କରା ନ ଯିବା ଦୁର୍ଭାଗ୍ୟର ଓ ଲଜ୍ୟାର ବିଷୟ । ସେ ଲେଖିଛନ୍ତି - ଏହା ସବୁ ଚେଷ୍ଟା କରିବାସହ ଓଡିଶାର ପାଠ୍ୟ ପୁସ୍ତକ ମାନଙ୍କରେ ସୁରେନ୍ଦ୍ରଙ୍କ ବିଷୟ ଲେଖାଯିବା ଉଚିତ । ସରକାର ସୁରେନ୍ଦ୍ରଙ୍କର ଘରବାଡି ହାତକୁ ନେଇ ମଧ୍ୟ କିଛି ସ୍ମାରକୀ ପ୍ରତିଷ୍ଠା କରିନଥିବାରୁ ସେ ଦୁଃଖ ପ୍ରକାଶ କରିଛନ୍ତି ।

ପାଣିଗ୍ରାହୀ ବାବୁଙ୍କ ପ୍ରବନ୍ଧରୁ ଦେଖାଯାଏ, ଭାରତର ସ୍ୱାଧୀନତା ପ୍ରାପ୍ତି ପରେ ୧୯୫୪ ମସିହାରୁ ଧାରାବାହିକ ଭାବେ ଆଜି ପର୍ଯ୍ୟନ୍ତ ସୁରେନ୍ଦ୍ରଙ୍କ ସ୍ମୃତି ଜାଗରୁକ କରି ତାଙ୍କୁ ମହିମାନ୍ୱିତ କରିବା ନିମନ୍ତେ ଓଡିଶା ରାଜ୍ୟ ସରକାର, ଓଡିଶା ବାସୀ ଏବଂ କେନ୍ଦ୍ର ସରକାର ସଦାସର୍ବଦା ତତ୍‌ପର ହୋଇଛନ୍ତି । ଆଜି ପାଣିଗ୍ରାହୀ ବାବୁଙ୍କ ଆଶା କରିବା ଅନୁସାରେ ଯାହାସବୁ ହେବା ଆବଶ୍ୟକ, ତାହା ହୋଇପାରିନାହିଁ । ଏହା ସତ୍ୟ । ସେ ଯାହା ସବୁ କରିବାକୁ ପରାମର୍ଶ ଦେଇଛନ୍ତି, ତାହାସବୁ କାର୍ଯ୍ୟକାରୀ ହେବା ଆବଶ୍ୟକ ।

କିନ୍ତୁ ଧୈର୍ଯ୍ୟର ସହ ବିଚାର କଲେ ଓଡିଶା ରାଜ୍ୟ ସରକାର ଓ କେନ୍ଦ୍ର ସରକାର ସୁରେନ୍ଦ୍ରଙ୍କ ସ୍ମୃତି ପାଳନ ନିମନ୍ତେ ଯେପରି ଆଗ୍ରହ ଦେଖାଇ ଯାହା କରିଛନ୍ତି; ଓଡିଶାର ଦିବଂଗତ ଅନ୍ୟ ବିପ୍ଲବୀ ବୀର ଓ ବରପୁତ୍ର ମାନଙ୍କ ନିମନ୍ତେ ଓଡିଶା ରାଜ୍ୟ ଗଠିତ ହେବାଦିନୁ ଓଡିଶା ରାଜ୍ୟ ସରକାର ଓ କେନ୍ଦ୍ର ସରକାର ସେପରି ଭାବେ କିଛି କରିନାହାନ୍ତି । ବଙ୍ଗାଳୀମାନେ "ଓଡିଆ ଏକ ଭାଷା ନୁହେଁ" ବୋଲି କହି ଯେତେବେଳେ ଓଡିଆ ଭାଷାକୁ ବିଲୋପ କରିବାକୁ ବସିଲେ, ସେ ସମୟରେ ଆଦିକବି ସାରଳା ଦାସଙ୍କ ଲିଖିତ "ମହାଭାରତରେ" ଉପଲବ୍ଧ ବଳିଷ୍ଠ ଭାଷାର ପ୍ରାଚୀନତା ପ୍ରମାଣରୁ ବଙ୍ଗାଳୀମାନଙ୍କର ସେ ଚକ୍ରାନ୍ତ ପଣ୍ଡ ହୋଇଯାଇଥିଲା । ଯଦି ଓଡିଆ ଭାଷା ନଥାନ୍ତା, ଭାଷା ଭିତ୍ତିରେ ମଧୁବାବୁଙ୍କ ଦ୍ୱାରା ଯେଉଁ ଓଡିଶା ପ୍ରଦେଶ ବା ଓଡିଶା ରାଜ୍ୟ ଗଠନ କରାଯାଇ ପାରିଛି, ତାହା ହୋଇପାରିନଥାନ୍ତା । ସେହି ଆଦି କବିଙ୍କ ସ୍ମୃତି ରକ୍ଷାର୍ଥେ ଓଡିଶା ସରକାର ଆଜି ପର୍ଯ୍ୟନ୍ତ ବିଶେଷ କିଛି କରିନାହାନ୍ତି । "ରବୀନ୍ଦ୍ର ମଣ୍ଡପ" ତିଆରି ହୋଇଛି । କିନ୍ତୁ ଆଗ "ସାରଳା ମଣ୍ଡପ" ହେବା ପରେ "ରବୀନ୍ଦ୍ର ମଣ୍ଡପ" ହେବା କଥା । ଅନ୍ୟ ନାନା କ୍ଷେତ୍ରରେ ଯେଉଁ ବିଶିଷ୍ଟ ବ୍ୟକ୍ତି, ବୀର ଏବଂ ବିପ୍ଲବୀ ଉତ୍କଳ ଜନନୀଙ୍କ ବରପୁତ୍ର ମାନେ ଓଡିଶାକୁ ମହିମାନ୍ୱିତ ଓ ଗୌରବାନ୍ୱିତ କରିଛନ୍ତି ସେମାନଙ୍କ ସ୍ମୃତି ରକ୍ଷାର୍ଥେ ଓଡିଶା ସରକାର କିଛି କରିନାହାନ୍ତି । ତେଣୁ ସୁରେନ୍ଦ୍ରଙ୍କ ନିମନ୍ତେ ଯାହା କରିଛନ୍ତି, ତାହା ଅନ୍ୟ କାହାରି ପ୍ରତି କରିନାହାନ୍ତି । ତଥାପି ପାଣିଗ୍ରାହୀ ବାବୁଙ୍କ ପ୍ରସ୍ତାବ ମତେ ସୁରେନ୍ଦ୍ରଙ୍କ ନିମନ୍ତେ ଅନେକ କିଛି କରିବାର ଆବଶ୍ୟକତା ନିଶ୍ଚୟ ଅଛି ।

ଆଜି ଯଦି ଓଡିଶା ରାଜ୍ୟ ନଥାନ୍ତା, ତେବେ ଓଡିଶା ସରକାର ନଥାନ୍ତା । ପଡୋଶୀ ରାଜ୍ୟ ମାନଙ୍କର ଚକ୍ରାନ୍ତରେ ଓଡିଶାର ଏକ ତୃତୀୟାଂଶ ଓଡିଶା ଭାଷାଭାଷୀ ଅଞ୍ଚଳ ଅନ୍ୟ ରାଜ୍ୟମାନଙ୍କରେ ସାମିଲ ହୋଇ ସେଠାରେ ଆଜି ଓଡିଆ ମାନେ ଯେପରି ନିଷ୍ପେଷିତ ହୋଇ ଓଡିଆ ଭାଷା ଓ ଓଡିଆତ୍ୱ ହରାଇ ବସିଛନ୍ତି, ସେହିପରି ଆଜିର ଓଡିଶା ମଧ୍ୟ ଅନ୍ୟରାଜ୍ୟ ଅନ୍ତର୍ଗତ ହୋଇଯାଇଥିଲେ, ସେଠିକାର ସରକାର ସୁରେନ୍ଦ୍ର ସାଏଙ୍କୁ ଅତୀତର ବିସ୍ମୃତି ଗହ୍ୱରରେ ନିକ୍ଷେପ କରି ତାଙ୍କ ସ୍ମାରକୀ ପାଳନ ଓ ମୂର୍ତ୍ତି ପ୍ରତିଷ୍ଠାର ପ୍ରଶ୍ନ ଉଠାଇ ନଥାନ୍ତେ କି ବାବୁ ଶ୍ରୀବଲ୍ଲଭ ପାଣୀଗ୍ରାହୀଙ୍କର ଏ ସୁନ୍ଦର ପ୍ରବନ୍ଧଟି ପ୍ରକାଶ ପାଇନଥାନ୍ତା । କାରଣ ଏହାର ପ୍ରକାଶ ପାଇଁ ଓଡିଆ ଖବର କାଗଜ ନଥାନ୍ତା । ଯଦି କୌଣସି ପ୍ରକାରେ ପ୍ରକାଶ ପାଇଥାନ୍ତା, ଓଡିଆରେ ପଢିବାକୁ କେହି ଓଡିଆ ଓଡିଆଭାଷା ଜାଣି ନଥାନ୍ତେ କିମ୍ୱା କବି ଜୟଦେବ ବଙ୍ଗଳାର ହେଲାପରି, ଓଡିଶାର ଉପେନ୍ଦ୍ର ମିଶ୍ରଙ୍କର ପୁତ୍ର ଜଗନ୍ନାଥ ମିଶ୍ର ଓ ତାଙ୍କ ପୁତ୍ର ଶ୍ରୀକୃଷ୍ଣ ଚୈତନ୍ୟ ବଙ୍ଗଳାର ହେଲାପରି, ବିପ୍ଳବୀ ବିର୍ସାମୁଣ୍ଡା ବିହାର ଝାଡଖଣ୍ଡର ହେଲାପରି, ସୁରେନ୍ଦ୍ର ସାଏ ଅନ୍ୟ ରାଜ୍ୟର ବୋଲି ଦାବି ଉଠିଥାନ୍ତା ।

୧୯୦୩ ମସିହାରେ ମଧୁବାବୁ କଂଗ୍ରେସରୁ ଅଲଗା ହୋଇ "ଉତ୍କଳ ସମ୍ମିଳନୀ" ଗଠନ କରି ଓଡିଆ ଭାଷୀ ଅଞ୍ଚଳ ଏକତ୍ରିତ କରି ଏକ ନୂତନ ଓଡିଶା ରାଜ୍ୟ ଗଠନ କରିବା ନିମନ୍ତେ ଆପ୍ରାଣ ଚେଷ୍ଟା କରିବା ସଂଗେ ସଂଗେ ଅତ୍ୟାଚାରିତ, ତ୍ରସ୍ତ ଓ ଅର୍ଦ୍ଧମୃତ ଓଡିଆ ଜାତି ପ୍ରାଣରେ ନୂତନ ଜୀବନ ଶକ୍ତି ସଂଞ୍ଚାର କରି ସ୍ୱାଭିମାନ ମନ୍ତ୍ରରେ ଦୀକ୍ଷିତ କରିଥିଲେ । ସେହି ସମୟରେ କିନ୍ତୁ ଓଡିଶା କଂଗ୍ରେସର ନେତାଥିଲେ ପଣ୍ଡିତ ଗୋପବନ୍ଧୁ ଦାସ । ସେ ପଡୋଶୀ ରାଜ୍ୟର ନେତାମାନଙ୍କର କୁପରାମର୍ଶରେ ବୋଧହୁଏ, ଚକ୍ରଧରପୁର ଠାରେ ମଧୁବାବୁଙ୍କ ଦ୍ୱାରା ଆହୂତ ଉତ୍କଳ ସମ୍ମିଳନୀ ସଭାକୁ ଯଥା ସମୟରେ କରାଇ ନଦେଇ ଅନ୍ୟ ଏକ ସମୟରେ କଂଗ୍ରେସର କେତେକ ସଭ୍ୟଙ୍କୁ ନେଇ ସେଠାରେ ଉଦ୍‌ବୋଧନ ଦେଇ କହିଲେ, "ଯଦି ଓଡିଶାର ସତ୍ତା ଲୋପକରି ଭାରତ ଜାତୀୟତା ରକ୍ଷା କାରାଯାଇପାରେ, ତେବେ ସେ ଗତି ସ୍ପୃହଣୀୟ

ନୁହେଁକି ? ତାହା ଓଡିଶା ଭାଗ୍ୟ ବୋଲି ବିଚାର କରିବାକୁ ହେବ । ............” (ଉତ୍କଳ ସମ୍ମିଳନୀ ଓ ଭାରତ ଜାତୀୟତା -ସତ୍ୟବାଦୀ-୬ଷ୍ଠ ଖଣ୍ଡ / ୧ମ ସଂଖ୍ୟା ସୌଜନ୍ୟରୁ) । ସେହି ସଭାରେ ଗୋପବନ୍ଧୁ ବାବୁ ତାଙ୍କ ସହଯୋଗୀ ମାନଙ୍କ ସମର୍ଥନରେ ଉତ୍କଳ ସମ୍ମିଳନୀକୁ କଂଗ୍ରେସରେ ସାମିଲ କରିଦେଇ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ଧାରାକୁ ସ୍ଥାଣୁ କରିଦେଲେ ।

ଭାରତର ଉନ୍ନତି ନିମନ୍ତେ ଭାରତର ସ୍ୱାଧୀନତା ଆବଶ୍ୟକ ଥିଲା । ଭାରତ ସ୍ୱାଧୀନତା ନିମନ୍ତେ ଓଡିଶାର ସତ୍ତା ଲୋପ ପାଇଁ ଗୋପବାବୁ ପ୍ରସ୍ତୁତ ଥିଲେ । କିନ୍ତୁ ମଧୁବାବୁଙ୍କ ମତରେ : ଭାରତରେ ପ୍ରତ୍ୟେକ ଭାଷାଭାଷୀ ଅଞ୍ଚଳ ଭାରତମାତାଙ୍କର ଗୋଟିଏ ଗୋଟିଏ ଅଙ୍ଗ ପ୍ରତ୍ୟଙ୍ଗ । ଶରୀରର ଗୋଟିଏ ଅଙ୍ଗ ଅସୁସ୍ଥ ହେଲେ ପୁରା ଶରୀର ଅସୁସ୍ଥ ବୋଲି ଅନୁଭୂତ ହୁଏ । ଭାରତର ଗୋଟିଏ ଭାଷା ଭାଷୀ ଅଞ୍ଚଳ ଅନୁନ୍ନତ ରହିଲେ ସାରା ଭାରତ ଉନ୍ନତ ବୋଲି କୁହାଯିବନାହିଁ । ତେଣୁ ଓଡିଆ ଭାଷୀ ଅଞ୍ଚଳ ଏକତ୍ରିତ ହୋଇ ଉନ୍ନତ ନହେଲେ ସାରା ଭାରତ ଉନ୍ନତ ବୋଲି କହିହେବ ନାହିଁ । ଏହି ଦୃଷ୍ଟିରୁ ଭାରତର ସ୍ୱାଧୀନତା ନିମନ୍ତେ ଓଡିଶାର ସତ୍ତା ଲୋପ ହେବା ପରିବର୍ତ୍ତେ ଏକତ୍ରିତ ଓଡିଆ ଭାଷୀ ଓଡିଆ ଅଞ୍ଚଳ ଓଡିଶା, ସୁଦୃଢ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଭାଗନେବା ଆବଶ୍ୟକ ଥିଲା ।

ଏହି ଠାରେ ମନେ ପଡେ ମଧୁବାବୁ ଓ ଗୋପବାବୁଙ୍କ ରାଜନୈତିକ ସଂମ୍ପର୍କ କଥା :-

ଡ଼: ଏନ୍ କେ.ସାହୁ, କୁଳପତି, ସମ୍ବଲପୁର ବିଶ୍ୱବିଦ୍ୟାଳୟ ଏବଂ ଡ଼: ପି. କେ. ମିଶ୍ର, ଇତିହାସ ବିଭାଗ ରିଡର, ସମ୍ବଲପୁର ବିଶ୍ୱବିଦ୍ୟାଳୟଙ୍କ ଦ୍ୱାରା ସମ୍ପାଦିତ :

“Madhusudan Das, The Legislator” ବହିରେ ନିମ୍ନମତେ ପ୍ରକାଶ ପାଇଛି :-

“XXX In 1903, Rajendranarayana Bhanj Deo, the Raja of Kanika, rendered Valuable support to Madhusudan for organising the Utkal Union

Conference (ଉତ୍କଳ ସମ୍ମିଳନୀ)at Cuttack.From 1903 to 1930 this non-political public forum under the stewardship of Madhusudan played the most significant role to inspire Oriya nationalism. Madhusudan deliberately kept it separate from political discussions in order to bring together the rulers and the common men and inculcate in them a sense of unity. XXX. His far sighted vision brought the Oriya youth and students community under the influence of the Utkal Union Conference, where they received necessary political training. Thus, a group of potential leaders like Gopabandhu Das, Nilakantha Das, Brajasundar Das and Laxminarayan Sahoo were trained to ensure proper leadership for the Oriya speaking people. XXX"

ଗୋପବନ୍ଧୁ ଲଅ ପାସ କଲା ପରେ ମଧୁବାବୁଙ୍କ ନିକଟରେ ଜୁନିୟର ହୋଇ ଓକିଲାତି କଲେ । ସେହି ସମୟରେ ଗୋପବାବୁଙ୍କର ଦେଶ ସେବା ନେଇ ଆଲୋଚନା ପ୍ରସଙ୍ଗରେ ମଧୁବାବୁ କହିଲେ, "ଆଗ ଦେଶ ରକ୍ଷାକଲେ, ପରେ ସେବା କରିବା ସିନା । ଓଡିଆ କେହି ମିଳୁ ନଥିବାରୁ ମୟୁରଭଞ୍ଜ ରାଜା ତାଙ୍କ ରାଜ୍ୟରେ କଲିକତାରୁ ବଙ୍ଗାଳୀମାନଙ୍କୁ ଆଣି ଶାସନର ସବୁ ସ୍ତରରେ ରଖୁଛନ୍ତି ।" ଏହିପରି ଆଲୋଚନା ମାଧ୍ୟମରେ ପ୍ରୋତ୍ସାହନ ଓ ରାଜାଙ୍କୁ ସୁପାରିଶ ଅନୁସାରେ ଗୋପବନ୍ଧୁବାବୁ ମୟୂରଭଞ୍ଜ ଷ୍ଟେଟର ସରକାରୀ ଓକିଲ ଏବଂ ବ୍ୟବସ୍ଥାପକ ସଭାର ସଭ୍ୟ ହେଲେ । ମୟୂରଭଞ୍ଜ ରାଜା ଦେହତ୍ୟାଗ କରିବାରୁ ଷ୍ଟେଟରେ କୋର୍ଟ ଅଫ ୱାର୍ଡସ କାର୍ଯ୍ୟକାରୀ ହେଲା । ଗୋପବାବୁ ଫେରି ଆସିଲେ । ଏହାର କିଛି ସମୟ ପରେ ବିହାର -ଓଡିଶା ଲେଜିସଲେଟିଭ କାଉନସିଲ ପାଇଁ ନିର୍ବାଚନ ସମୟ ଆସିଲା । ନୀଳକଣ୍ଠ ଦାସ ଲେଖିଲେ, ଗୋପବାବୁଙ୍କର ଇଛା ନଥିଲେ ମଧ ମଧୁବାବୁଙ୍କ ପ୍ରେରଣା ଯୋଗୁଁ ନିର୍ବାଚନ ଲଢିବାକୁ ଦରଖାସ୍ତରେ ଦସ୍ତଖତ କଲେ । ମଧୁବାବୁ କନିକା ରାଜାଙ୍କ ସାହାଯ୍ୟ ନେଇ ପ୍ରଚାର କରି ଗୋପବନ୍ଧୁ ବାବୁଙ୍କୁ ବିହାର ଓଡିଶା ଲେଜିସଲେଟିଭ କାଉନସିଲ୍‌କୁ ପଠାଇଲେ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ, ମଧୁବାବୁ

ଗୋପବାବୁଙ୍କୁ କେତେ ଶ୍ରଦ୍ଧା କରୁଥିଲେ ଏବଂ ତାଙ୍କର ଗୌରବ ଓ ମହିମା ବୃଦ୍ଧି ନିମନ୍ତେ କେତେ ଉତ୍ସାହୀ ଥିଲେ । ଏହିସବୁ ଘଟଣାକୁ ନେଇ ବିଚାର କଲେ ଏହା ଅତିଶୟୋକ୍ତି ହେବ ନାହିଁ ଯେ, ମଧୁବାବୁ ଗୋପବାବୁଙ୍କର "ରାଜନୈତିକ ଗୁରୁ" ଥିଲେ ।

ସତ୍ୟବାଦୀ ବିଦ୍ୟାଳୟ ଖୋଲିଲା ପରେ ମଧୁବାବୁ ଖୁସୀ ହୋଇ କହିଥିଲେ - ସେ ସେହିପରି ଗୋଟିଏ ସ୍କୁଲ କରିବାକୁ ଚାହୁଁଥିଲେ । କିନ୍ତୁ ପାରି ନଥିଲେ । ଯାହା ହେଉ, ଗୋପବାବୁ କଲେ । ଉତ୍କଳ ସମ୍ମିଳନୀ ସଭାରେ ପ୍ରଚୁର ପରିମାଣର ଚାନ୍ଦା ଆଦାୟ କରି ଗୋପ ବାବୁଙ୍କ ସ୍କୁଲକୁ ଦେଉଥିଲେ । ଲୋକ ସେବା ନିମନ୍ତେ ସେ ସର୍ବଦା ଗୋପବାବୁଙ୍କୁ ପ୍ରେରଣା ଦେଉଥିଲେ । ବନ୍ୟା ସମୟରେ ଦୋକାନୀ ଚୂଡା ଚାଉଳ ବାଣ୍ଟିବାକୁ ଦାନ ନ ଦେଲେ, ମଧୁବାବୁଙ୍କ ଠାରୁ କଡା ଚିଠି ନେଇ ଗୋପବାବୁ ତାହା ପାଉଥିଲେ । ଏହି ପରି ସମ୍ପର୍କ ମଧୁବାବୁ ଗୋପବାବୁଙ୍କ ସହ ରଖିଥିଲେ ।

କିନ୍ତୁ କଂଗ୍ରେସ ଅନୁଷ୍ଠାନ ସମ୍ପର୍କରେ ଆସି ଗୋପବାବୁ ଦୂରଦ୍ରଷ୍ଟା ଏବଂ ଶ୍ରଦ୍ଧାଶୀଳ ଗୁରୁଙ୍କୁ ନିକୃଷ୍ଟ ମନେକରି ତାଙ୍କ ଠାରୁ ଦୂରେଇ ଗଲେ ଏବଂ ଉତ୍କଳ ସମ୍ମିଳନୀକୁ ମୃତ ପ୍ରାୟ କରାଗଲା । ସେହିପରି ଅନ୍ୟ କଂଗ୍ରେସ ନେତା ଶ୍ରୀ ହରେକୃଷ୍ଣ ମହତାବ ବାବୁ ତାଙ୍କ ଲିଖିତ "୧୦ ବର୍ଷର ଓଡିଶା" ବହିରେ ଲେଖିଲେ - "ବର୍ତ୍ତମାନ ଭାଷା ଭିତ୍ତିରେ ଓଡିଶା ପ୍ରଦେଶ ଗଠନ ଅନାବଶ୍ୟକ" । ଏହି ପରି ଭାବେ ଓଡିଶାର କଂଗ୍ରେସ ନେତାମାନେ ନାନାବାଧା ସୃଷ୍ଟି କରିଥିଲେ, ମଧୁବାବୁଙ୍କ ଓଡିଶା ପ୍ରଦେଶ ଗଠନ କରିବା କାର୍ଯ୍ୟଧାରାରେ । କଂଗ୍ରେସ ଅନୁଷ୍ଠାନ ସାଇମନ କମିଶନକୁ ବୟକଟ୍ କଲା ସମୟରେ ମଧୁବାବୁ ନିଜ ଧାରାରେ ସାଇମନ କମିଶନଙ୍କୁ ଅଭ୍ୟର୍ଥନା ଜଣାଇବାରୁ, ସାଇମନ କମିଶନଙ୍କ ସୁପାରିଶ ଅନୁସାରେ ଓଡିଶା ପ୍ରଦେଶ ଗଠନର ବାଟ ଫିଟିଲା । ମଧୁବାବୁଙ୍କର ଐକାନ୍ତିକ ଓ ଅକ୍ଳାନ୍ତ ପ୍ରାଣପାତ ପରିଶ୍ରମ ଯୋଗୁଁ ଓଡିଶା ପ୍ରଦେଶ ଗଠିତ ହୋଇପାରିଥିଲା ।

୧୯୩୬ ମସିହା ଅପ୍ରେଲ ପହିଲାରେ ଓଡିଶା ସରକାର ଗଠିତ ହେଲା । ସେତେବେଳକୁ ମଧୁବାବୁ ନ ଥିଲେ । ସ୍ୱାଧୀନତା ପରେ ଅନ୍ୟ

ପ୍ରଦେଶରେ କଂଗ୍ରେସର ନେତାମାନଙ୍କର ଓଡିଶା ବିରୁଦ୍ଧରେ ଯେପରି କୁଚକ୍ରାନ୍ତ ଦେଖାଗଲା, ଯାହା ପରେ ଉଲ୍ଲେଖ କରିବି ଏବଂ ଓଡିଶାର ସେ ସମୟରେ ଏକମାତ୍ର ରାଜନୈତିକ ଦଳ କଂଗ୍ରେସ ନେତାମାନଙ୍କର ହୀନମନ୍ୟତା, ସ୍ୱାର୍ଥପରତା, ଏବଂ ଦୃଢ ନେତୃତ୍ୱହୀନତାର ଯେପରି ପ୍ରକାଶ ପାଇଲା, ସେଥିରେ ଓଡିଶା ପ୍ରଦେଶ ଯେ କେବେ ଗଠିତ ହୋଇନଥାନ୍ତା ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । କିନ୍ତୁ ଯେଉଁ କଂଗ୍ରେସ ନେତାମାନେ ଓଡିଶା ଗଠନର ବିରୋଧ କରୁଥିଲେ, ମଧୁବାବୁଙ୍କ ଫଟୋ ପୋଡୁଥିଲେ, ସେହିମାନେ ହିଁ ମନ୍ତ୍ରୀଗାଦି ଉପଭୋଗ କରିଚାଲିଲେ । ମଧୁବାବୁଙ୍କ ଓଡିଶା ଗଠନକୁ ଯେଉଁ ନେତାମାନେ ବିରୋଧ କରୁଥିଲେ ସେମାନଙ୍କର ମୁଖ୍ୟମନ୍ତ୍ରୀ ଏବଂ ମନ୍ତ୍ରୀ ହେବାପାଇଁ ଆଗ୍ରହାତିଶଯ୍ୟ ଦେଖି ସାଧାରଣ ଲୋକଙ୍କ ଦୃଷ୍ଟିରେ ତାହା ଚକ୍ଷୁଃଶୂଳ ହେଉଥିବା ଅନୁଭବ କରି ସେମାନେ ଧାରାବାହିକ ଭାବେ ମଧୁବାବୁଙ୍କ ସ୍ମୃତିକୁ ବିଲୁପ୍ତ କରିବାକୁ ସଂକଳ୍ପବଦ୍ଧ ହୋଇ କାର୍ଯ୍ୟ କରିଚାଲିଲେ । ମଧୁବାବୁଙ୍କ ଜୀବନୀ ଲେଖକ ବାବୁ ସୁରେନ୍ଦ୍ର ମହାନ୍ତି ଲେଖନ୍ତି, "ଓଡିଶା ପ୍ରଦେଶ ଗଠନ ପାଇଁ ମଧୁସୂଦନ କଂଗ୍ରେସରୁ ଅଲଗା ରହିଥିଲେ ହେଁ ତାଙ୍କର ବଳିଷ୍ଠ ଦେଶ ପ୍ରେମରେ କାହାରି ତିଳାର୍ଦ୍ଧ ପ୍ରମାଣେ ସନ୍ଦେହ ନଥିଲା । ତଥାପି ରାଜ୍ୟଗଠନ ପରେ ଓଡିଶାରେ କଂଗ୍ରେସର ନେତାମାନେ କାଳେ ମ୍ଳାନ ପଡିଯିବେ ବୋଲି ଆଶଙ୍କା କରି ତାଙ୍କୁ ଯଥା ସମ୍ଭବ ଲୋକଦୃଷ୍ଟିରୁ ଏଡାଇ ରଖିବାର ଚେଷ୍ଟା କରିଥିଲେ । ଏପରିକି କଟକରେ ଗୋଟିଏ ଦୈନିକ ସମ୍ବାଦପତ୍ର ସମ୍ପାଦକୀୟ ସ୍ତମ୍ଭରେ ଥରେ ମଧୁସୂଦନଙ୍କୁ "ଛେଉକା ଓକିଲ" ଥିଲେ ବୋଲି କଟାକ୍ଷ କରିବା ପାଇଁ କୁଣ୍ଠିତ ହୋଇ ନଥିଲେ" । (ପଥ ଓ ପୃଥିବୀ -ସୌଜନ୍ୟରୁ )

ମଧୁବାବୁ "ଛେଉକା ଓକିଲ" ଥିଲେ କି ପ୍ରବଳ ପ୍ରତିଭାବାନ୍ ଓକିଲ ଥିଲେ, ସେ ବିଷୟରେ ପଦେ ନଲେଖି ରହିପାରୁନାହିଁ । ୧୮୮୧ ମସିହାରେ କଲିକତା ଛାଡି ମଧୁବାବୁ କଟକ ଆସିଲେ ଓକିଲାତି କରିବାକୁ । ସେତେବେଳେ କଟକରେ ଓଡିଆ ଓକିଲ କେହି ନଥିଲେ । ଓଡିଆ ଓକିଲ ବୋଲି ତାଚ୍ଛଲ୍ୟ କରି ବଙ୍ଗାଳୀ ଓକିଲମାନେ ତାଙ୍କୁ ବାର ଲାଇବ୍ରେରୀରେ ବସିବାକୁ ଦେଇନଥିଲେ । ମଧୁବାବୁଙ୍କ ଓକିଲାତିରେ ଦକ୍ଷତା ନ ଜାଣି ଗରିବ ଗୁରୁବାଙ୍କ

ଛଡା ଥିଲାବାଲା ମହକିଲ ତାଙ୍କ ନିକଟକୁ ଆସୁନଥିଲେ । ଏହିପରି ଦିନ କଟୁଥିବା ସମୟରେ ପୁରୀର ଜଣେ ମହନ୍ତ ଗୋଟିଏ ଗରିବ ଚାଷୀର ଜମିକୁ ଜବର ଦଖଲ କରିନେଇ ତାକୁ ସେସନ୍ସ କେଶ୍ ରେ ପକାଇ ଦେଇଥାଏ । କେଶ୍ ପଡିବା ଆଗରୁ କଟକର ସବୁ ବଡ ଏବଂ ଛୋଟ ଓକିଲ ମାନଙ୍କଠାରୁ, କାହାକୁ ବେଶୀ କାହାକୁ ଅଳ୍ପ ସଲାମୀ ଟଙ୍କା ଦେଇ, ଓକିଲାତିନାମାରେ ଦସ୍ତଖତ କରାଇ ସାରିଲାପରେ ଶେଷକୁ ମଧୁବାବୁଙ୍କ ନିକଟକୁ ଆସି ଅତ୍ୟଧିକ ୧୦୧ ଟଙ୍କା ସଲାମୀ ଯାଚି ଓକିଲାତିନାମାରେ ଦସ୍ତଖତ ନେବାକୁ ଚାହିଁଥିଲେ । ମଧୁବାବୁ ଠିକ୍ ବୁଝିପାରିଥିଲେ ସେ ଗରିବ ଲୋକ ଯେପରି କୌଣସି ଓକିଲର ସାହାଯ୍ୟ ନପାଏ, ସେହି ଉଦ୍ଦେଶ୍ୟରେ ସେ କେବଳ ମଧୁବାବୁଙ୍କ ଦସ୍ତଖତ ନେବାକୁ ଆସିଥିଲେ, କେଶ୍‌ରେ ଓକିଲ ଭାବେ ନିଯୁକ୍ତ କରିବାକୁ ନୁହେଁ । ମଧୁବାବୁ ଶହେ ଏକ ଟଙ୍କାର ଲୋଭ ତ୍ୟାଗକରି ସେ ଗରିବ ତରଫରୁ କେଶ ଲଢିବେ କହି ମହନ୍ତଙ୍କୁ ଫେରାଇ ଦେଇଥିଲେ । ଶେଷରେ ସେ ଗରିବ ଲୋକଟିର କେଶ ନେଇ କଟକର ସବୁ ବଡ ଛୋଟ ଓକିଲଙ୍କୁ ପରାସ୍ତ କରି କେଶ୍‌ଟି ଜିଣିଲେ । ଟଙ୍କା ତ ପାଇଲେ ନାହିଁ । ଗରିବଟିକୁ କିଛି ଟଙ୍କା ଦେଇ ଘରକୁ ବିଦାକଲେ ।

ମଧୁବାବୁ ନିଜର ବୁଦ୍ଧି, ଜ୍ଞାନ ଏବଂ ମୋକଦ୍ଦମାର ସୁଦକ୍ଷ ପରିଚାଳନା ବଳରେ ଅତିଶୀଘ୍ର କଟକର ଶ୍ରେଷ୍ଠ ଓକିଲ ହୋଇ ପାରିଥିଲେ ।

ଆଉ ଗୋଟିଏ କେଶ କଥା ଉଲ୍ଲେଖ କରୁଛି । ସେତେବେଳେ ଭାରତରେ ମହା ଚତୁର ଏବଂ ଶକ୍ତିଶାଳୀ ବ୍ରିଟିଶ ସରକାର । ଓଡିଶାର ବ୍ରିଟିଶ ଶାସକ ମାନଙ୍କର ଏକ କୁଚକ୍ରାନ୍ତ ଚାଲିଲା ପୁରୀ ଜଗନ୍ନାଥ ମନ୍ଦିର ଉପରେ ସରକାରଙ୍କର ଅଧିକାର ସାବ୍ୟସ୍ତ କରିବା ନିମନ୍ତେ । ସେଥିପାଇଁ ପ୍ରଥମେ ପୁରୀର ଗଜପତି ମହାରାଜା ଦିବ୍ୟସିଂହ ଦେବ, ଯେ ମନ୍ଦିରର ମୁଖ୍ୟଅଧିକାରୀ ଓ ପରିଚାଳକ, ତାଙ୍କୁ ଦୃଶ୍ୟପଟରୁ ଅପସାରିତ କରିବା ମାନସରେ ଏକ ମିଥ୍ୟା ନରହତ୍ୟା ମାମଲାରେ ଜଡିତ କରି ନିର୍ବାସନ ଦଣ୍ଡ ଦିଆଇ ଆଣ୍ଡାମାନକୁ ଦ୍ୱୀପାନ୍ତରିତ କରିଦେଲେ । ରାଜା ନିର୍ବାସିତ ହୋଇଯିବାରୁ ମନ୍ଦିରର ପୂଜା ବିଧି ପରିଚାଳନା ନିମନ୍ତେ ରାଜାଙ୍କର ଆବଶ୍ୟକତା ଥିବାରୁ ଦିବ୍ୟସିଂହ ଦେବଙ୍କ

ନାବାଳକ ପୁତ୍ରଙ୍କୁ ତାଙ୍କ ପିତାମହୀ ଶ୍ରୀମତୀ ସୂର୍ଯ୍ୟମଣି ପାଟ୍ଟମହାଦେଈ ଅଭିଷେକ କରାଇ ରାଜା ଭାବେ ପ୍ରତିଷ୍ଠିତ କରାଇ ତାହା ଗ୍ରହଣ କରିବାକୁ ସରକାରଙ୍କୁ ଦରଖାସ୍ତ କଲେ। କିନ୍ତୁ ସେହି ଦରଖାସ୍ତକୁ ମଞ୍ଜୁର ନକରି ଶାସକ ଗୋଷ୍ଠୀ ପକାଇ ରଖିଲେ। ଦେଉଳର କାର୍ଯ୍ୟ ପରିଚାଳନା କଲେକ୍ଟରଙ୍କ ହାତରେ ରହିଲା। ରାଜାଙ୍କର ଅସ୍ଥାବର ସମ୍ପତ୍ତିର ପରିଚାଳନା ଭାର ସରକାରଙ୍କ ଦ୍ୱାରା ନିଯୁକ୍ତ ବଙ୍ଗାଳୀ ଦେଓ୍ୱାନ୍‌ଙ୍କ ହାତରେ ରହିଲା। ରାଣୀଙ୍କର ପେନ୍‌ସନ୍ ବନ୍ଦକରି ଦିଆଗଲା। ତେଣୁ ନଅରରେ ଖାଇବା ପିଇବା ନିମନ୍ତେ ଅର୍ଥର ଅଭାବ ମଧ୍ୟ ପଡିଲା। ଏହିପରି ଭାବେ ରାଜ ପରିବାରକୁ ସର୍ବସ୍ୱାନ୍ତ କରିବାର ଚେଷ୍ଟା କରାଗଲା। ଏପରି ଅବସ୍ଥାରେ ନାବାଳକ ନୂତନ ରାଜାଙ୍କୁ ସ୍ୱୀକୃତି ଦେବା ଦରଖାସ୍ତକୁ ସରକାରଙ୍କ ଦ୍ୱାରା ମଞ୍ଜୁର କରି ଆଣିବା ନିମନ୍ତେ ହାତରେ ପଇସା ନଥିବା ଯୋଗୁଁ ଏବଂ ଏଥିପାଇଁ ଜଣେ ସହାନୁଭୂତିଶୀଳ ଓଡିଆ ଓକିଲ ନିଯୁକ୍ତ କରିବା ଉଦ୍ଦେଶ୍ୟରେ ସୂର୍ଯ୍ୟମଣି ପାଟ୍ଟମହାଦେଈ ମଧୁବାବୁଙ୍କୁ ନିମନ୍ତ୍ରଣ କଲେ। ମଧୁବାବୁ ଆସି ସବୁ ଶୁଣିଲେ ଏବଂ ବୁଝିଲେ।

ମଧୁବାବୁ ଖ୍ରୀଷ୍ଟିୟାନ ହୋଇଯାଇଥିଲେ। ସେଥିପାଇଁ ସାଧାରଣ ଭାବେ ହିନ୍ଦୁ ମନ୍ଦିର ପାଇଁ ତାଙ୍କର ବ୍ୟସ୍ତ ହେବାର କିଛି ନଥିଲା। କିନ୍ତୁ ମଧୁବାବୁଙ୍କ ମନରେ ଜାଗ୍ରତ ହେଲା, ଜଗନ୍ନାଥ କେବଳ ହିନ୍ଦୁଙ୍କ ଦେବତା ନୁହନ୍ତି। ଜଗନ୍ନାଥ ହିଁ ଓଡିଶାବାସୀଙ୍କ ଆତ୍ମା ଏବଂ ଓଡିଶାର ଇତିହାସ। ଯେଉଁ ଅଧଃପତିତ ଉତ୍କଳର ଅଭ୍ୟୁଦୟ ତାଙ୍କ ଜୀବନର ପ୍ରିୟତମ ସ୍ୱପ୍ନ ଏବଂ ଆକାଂକ୍ଷା ତାହା ଜଗନ୍ନାଥଙ୍କ ବିନା ହୋଇପାରିବ ନାହିଁ। ତେଣୁ ଜଗନ୍ନାଥଙ୍କ ପୂଜା ବିଧି ନିମନ୍ତେ ଯେଉଁ ରାଜାଙ୍କର ଅନିର୍ବାଯ୍ୟ ଆବଶ୍ୟକତା, ତାଙ୍କର ସ୍ଥିତି ଏବଂ ମାନ ଅପମାନ ଓଡିଆ ଜାତିର ମାନ ଅପମାନ ବୋଲି ଅନୁଭବ କରି, ଏ ମୋକଦ୍ଦମାରେ ଟଙ୍କା ପାଇବା ବଦଳରେ ହାତରୁ ଖର୍ଚ୍ଚ କରି ମୋକଦ୍ଦମା ଚଳାଇବା କଥା ଜାଣି ମଧ୍ୟ ମୋକଦ୍ଦମା ଚଳାଇବାକୁ, ରାଣୀଙ୍କୁ ପ୍ରତିଶ୍ରୁତି ଦେଇ ଆସିଲେ।

ନିମ୍ନସ୍ତରରେ ମୋକଦ୍ଦମା ଖାରଜ ହେବା ପରେ ହାଇକୋର୍ଟରେ ଅପିଲ୍ ହେଲା। କଲିକତାର ବରିଷ୍ଠ ବାରିଷ୍ଟର ଦୁଇ ଜଣଙ୍କୁ ନିଜ ଖର୍ଚ୍ଚରେ ହାଇକୋର୍ଟରେ ନିଯୁକ୍ତ କଲେ। ନିଜେ ସମସ୍ତ ଶାସ୍ତ୍ର ପୁରାଣର ପ୍ରମାଣ, ବହୁ

ଯୁଗ ଯୁଗ ଧରି ଓଡିଆ ଜାତି ଓ ଶ୍ରୀମନ୍ଦିରର ପରମ୍ପରା, ଭାରତର ହିନ୍ଦୁଧର୍ମାବଲମ୍ବୀ ମାନଙ୍କର ଧାର୍ମିକ ବିଶ୍ୱାସ, ଅତୀତର ଭିନ୍ନ ଭିନ୍ନ ଧର୍ମୀ ଆକବରଙ୍କ ଠାରୁ ଅନ୍ୟ ମାନଙ୍କ ଶାସନ କାଳରେ ଶ୍ରୀମନ୍ଦିର ପ୍ରତି ସମ୍ମାନ, ଭିନ୍ନ ଭିନ୍ନ ଦଲିଲ ଦସ୍ତାବିଜ୍ ଓ ଆଇନ କାନୁନ୍ ସବୁର ବହିପତ୍ର ଏକତ୍ରିତ କରି ଏକ ଶକ୍ତିଶାଳୀ ବିସ୍ତୃତ ଚିଠା (ନୋଟ୍) ପ୍ରସ୍ତୁତ କରି ବାରିଷ୍ଟର୍ ମାନଙ୍କୁ ଦେଲେ ଜବାବ ସୁଆଲ କରିବାକୁ। ଜବାବ ସୁଆଲ ଶୁଣି ହାଇକୋର୍ଟ ଜଜ୍‌ମାନେ ବାରିଷ୍ଟର ଦ୍ୱୟଙ୍କୁ ସେମାନଙ୍କର ପ୍ରସ୍ତୁତ ନୋଟ୍ ପାଇଁ ଭୂରି ଭୂରି ପ୍ରଶଂସା କଲେ। ବାରିଷ୍ଟର ଦ୍ୱୟ ଆନନ୍ଦ ଏବଂ ଉଦାରତା ସହ କହିଲେ, ଏ ନୋଟ୍ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ନୁହେଁ। ସମସ୍ତ ପ୍ରଶଂସା କେବଳ ଏହି ଯୁବକ ଓକିଲ ମଧୁସୂଦନ ଦାସଙ୍କ ପ୍ରାପ୍ୟ । ମଧୁବାବୁ ମୋକଦ୍ଦମା ଜିଣିଲେ।

ଏହା ମଧୁବାବୁଙ୍କ ସମୃଦ୍ଧ ଜ୍ଞାନ ଏବଂ ବୁଦ୍ଧିମତ୍ତାର ନିଛକ ପ୍ରମାଣ। ଏହି ମୋକଦ୍ଦମା ପରେ ମଧୁବାବୁ ଓଡିଶା ଏବଂ ଓଡିଶା ବାହାରେ ସାରା ଭାରତରେ ପ୍ରସିଦ୍ଧି ଲାଭ କଲେ।

ମଧୁବାବୁଙ୍କ ଜୀବନର ଆଉ ଦୁଇଟି ଘଟଣା ଉଲ୍ଲେଖ କରୁଛି, ତାଙ୍କର ବୁଦ୍ଧି ଏବଂ ପ୍ରତ୍ୟୁତ୍‌ପନ୍ନମତିତାର ଦୃଷ୍ଟାନ୍ତ ଦେବାକୁ।

୧୯୦୭ ମସିହାରେ ମଧୁସୂଦନ ବିଲାତ ଯାଇଥିଲେ ଓଡିଶାର ଦାବିମାନ ବିଲାତ ସରକାରଙ୍କ ନିକଟରେ ଉପସ୍ଥାପିତ କରିବାକୁ। ବହୁ ଚେଷ୍ଟା ପରେ ସେ ସମୟର ସେକ୍ରେଟାରୀ-ଅଫ୍-ଷ୍ଟେଟ୍ ଲର୍ଡ ମର୍‌ଲେ ଖବର ଦେଲେ ଯେ ଓଡିଶାର ପ୍ରତିନିଧି ଭାବେ ନୁହେଁ, ମଧୁବାବୁଙ୍କୁ ଏକ ବ୍ୟକ୍ତିଗତ ସାକ୍ଷାତ ଦେବେ। ମଧୁବାବୁ ରାଜି ହୋଇଗଲେ। ମର୍‌ଲେ ଭାବିଥିଲେ ଏକ କ୍ଷୀଣକାୟ ବୃଦ୍ଧ ଅଜଣା ଅଶୁଣା ଓଡିଶାର ସ୍ୱେଚ୍ଛା ନିଯୁକ୍ତ ପ୍ରତିନିଧିଙ୍କୁ ସ୍ୱଳ୍ପ ସମୟ ମଧ୍ୟରେ ବିଦା କରିଦେବେ। ମଧୁସୂଦନ ଦେଖା କରିବାକୁ ଭିତରକୁ ଗଲାପରେ ବଡ ଉପକାରୀ ଏବଂ ସାହାଯ୍ୟକାରୀ ଭାବେ ଦୟାପରବଶ କଣ୍ଠରେ କହିଲେ - "ଆଫଗାନ ମାନଙ୍କର ଡେସ୍‌ପଟିଜିମ୍ (ସ୍ୱେଚ୍ଛାଚାରପୂର୍ଣ୍ଣ ଅତ୍ୟାଚାରୀ ଶାସନ) ତୁଳନାରେ ଭାରତରେ ବ୍ରିଟିଶ ଶାସନ ଅଧିକ ଲୋକାଭିମୁଖୀ ନୁହେଁକି ?"

ତତକ୍ଷଣାତ୍ ବିନା କାଳାତିପାତରେ ଶାନ୍ତ କଣ୍ଠରେ ମଧୁବାବୁ ଉତ୍ତର ଦେଲେ, " ଆପଣ ଜଣେ ଗଣତନ୍ତ୍ରବାଦୀ ଇଂଲିଶ ଲୋକ ହୋଇ ଡେସ୍‌ପର୍ଟ (ଉତ୍‌ପୀଡକ ଶାସକ) ହେବାଦ୍ୱାରା ନିଜକୁ ନିମ୍ନସ୍ତରକୁ ଖସାଇ (ଡିଗ୍ରେଡ କରି) ପଦମର୍ଯ୍ୟାଦା ହ୍ରାସ କରାନ୍ତୁ ନାହିଁ। ରାଣୀ ଭିକ୍ଟୋରିଆଙ୍କୁ ଋଷିଆ ରାଜଗାଦିରେ ବସାଇଲେ ସେ ନିଷ୍ଫଳ (ୟୁସ୍‌ଲେଶ୍) ହେବେ। ଋଷିଆର ରାଜା ଜାର୍‌ଙ୍କୁ ବ୍ରିଟିଶ ରାଜଗାଦିରେ ବସାଇଲେ ୨୪ଘଣ୍ଟା ମଧ୍ୟରେ ତାଙ୍କୁ ହତ୍ୟା କରାଯିବ।" ଏହା ମଧୁବାବୁଙ୍କର ପ୍ରତ୍ୟୁତ୍ପନ୍ନମତିତାର ବଳିଷ୍ଠ ପ୍ରମାଣ।

ଭାରତରେ ବ୍ରିଟିଶ ଶାସନର ଏପରି ଭର୍ତ୍ସନା ନିଜ ମୁହଁ ଉପରେ ଜଣେ ଅନାମଧେୟ ଓଡିଆ ଠାରୁ ଶୁଣିବେ ବୋଲି ମର୍‌ଲେ କେବେ ଆଶା କରିନଥିଲେ। ଏହାପରେ ଧୈର୍ଯ୍ୟ ଓ ସହାନୁଭୂତିର ସହ ଓଡିଶାର ସମସ୍ତ ଅଭିଯୋଗ ଶୁଣିବା ପାଇଁ ଲର୍ଡ ମର୍‌ଲେ ପ୍ରସ୍ତୁତ ହୋଇ ବସିଲେ।

ଅନ୍ୟ ଏକ କଥା : ବିହାର-ଓଡିଶା ମନ୍ତ୍ରୀ ମଣ୍ଡଳରେ ମନ୍ତ୍ରୀ ଥିବା ସମୟରେ ଅତି ନିଷ୍ଠାପର, କାର୍ଯ୍ୟଦକ୍ଷ ମନ୍ତ୍ରୀ ଭାବେ ପ୍ରତିଷ୍ଠା ଲାଭ କରିଥିଲେ। ସେ ତାଙ୍କର ନିମ୍ନସ୍ତର ଅଧିକାରୀମାନଙ୍କ ଉପରେ କଡା ଅଙ୍କୁଶ ଜାରି କରୁଥିଲେ। ଶାସନର ନିମ୍ନ ସ୍ତରରେ ବ୍ରିଟିଶ ଅଧିକାରୀ ଗୋଷ୍ଠୀ ମଧ୍ୟ ଥିଲେ। ଜଣେ ବ୍ରିଟିଶ ଅଧିକାରୀ ଅତିଷ୍ଠ ହୋଇ କଥାରେ କଥାରେ ଥରେ ମଧୁସୂଦନଙ୍କୁ ତାଙ୍କ କ୍ଷମତା ବଳୟର ସୀମା ଅଛି ବୋଲି ପ୍ରକାରାନ୍ତେ ପ୍ରକାଶ କରିବା ପାଇଁ କହିଲେ, "ମି. ଦାସ, ଆପଣ ଜାଣନ୍ତି ନାହିଁ କି ବ୍ରଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହୁଅନ୍ତି ନାହିଁ?" ମଧୁସୂଦନ ତାଙ୍କର ଉଦ୍ଦେଶ୍ୟ ତୁରନ୍ତ ବୁଝି ସଙ୍ଗେ ସଙ୍ଗେ ଉତ୍ତର ଦେଲେ, " ମୁଁ ଜାଣେ ସୂର୍ଯ୍ୟଦେବ ବ୍ରିଟିଶ ଶାସକମାନଙ୍କୁ ଅନ୍ଧାରରେ ବିଶ୍ୱାସ କରନ୍ତି ନାହିଁ"। ବ୍ରିଟିଶ ଅଧିକାରୀଟି ନୀରବରେ ମୁଣ୍ଡପାତି ଉଠିଗଲେ। ଏହା ମଧୁବାବୁଙ୍କର ପ୍ରତ୍ୟୁତ୍ପନ୍ନମତିତାର ସୁଦୃଢ ପ୍ରମାଣ।

ମଧୁବାବୁ କୁଜଙ୍ଗ ରାଜାଙ୍କର ଓକିଲ ଥିଲେ। ଥରେ ଓଡିଶା ବେଞ୍ଚରେ ବିଚାର କରିବାକୁ ହାଇକୋର୍ଟର ପ୍ରଧାନ ବିଚାରପତି ଓଡିଶା ଆସିଥାଆନ୍ତି। ସେ ପହଞ୍ଚି କୁମ୍ଭୀର ଶିକାର କରିବାକୁ କୁଜଙ୍ଗକୁ ଯାଇ ରାଜାଙ୍କ ଆତିଥ୍ୟ ଗ୍ରହଣ କରିଥିଲେ।

ପରେ କୋର୍ଟ ସମୟ ପୂର୍ବରୁ ପ୍ରଧାନ ବିଚାରପତିଙ୍କୁ ତାଙ୍କର ଖାସ୍ କ୍ୟାମେରାରେ ସାକ୍ଷାତ କରି ମଧୁବାବୁ କହିଲେ, "ଆପଣଙ୍କ ନିକଟରେ ଯେଉଁ ମହକିଲ-କୁଜଙ୍ଗ ରାଜାଙ୍କର ମୋକଦ୍ଦମା ଅଛି, ତାଙ୍କର ଆତିଥ୍ୟ ଆପଣ ଗ୍ରହଣ କରିଛନ୍ତି। କୁଜଙ୍ଗ ରାଜା ମୋ ମହକିଲ୍। ମୁଁ ତାଙ୍କ ନିମନ୍ତେ ଆପଣଙ୍କ କୋର୍ଟରେ ଜବାବ୍ ସୁଆଲ କରିବାକୁ ଚାହୁଁନାହିଁ।" ଏହିପରି ନିର୍ଭୀକ, ସଚ୍ଚୋଟ, ସାହସୀ ଓକିଲ ମଧୁବାବୁ ଥିଲେ।

ଉପରଲିଖିତ କେତେକ ଘଟଣା ମାନଙ୍କରୁ ବୁଝିହେବ, ମଧୁବାବୁ କିପରି ଜଣେ ଜ୍ଞାନୀ, ଗୁଣୀ, ସଚ୍ଚୋଟ, ନିର୍ଭୀକ, ସାହସୀ, ମେଧାବୀ, ପ୍ରତ୍ୟୁତ୍ପନ୍ନମତି, ଦୟାବାନ୍, ନ୍ୟାୟବାନ୍ ଓକିଲ ଭାବେ ପ୍ରତିଭାତ ହେଉଥିଲେ ଏବଂ ହେଉଛନ୍ତି। ତାଙ୍କୁ ଯେଉଁ ସଂପାଦକ ମହୋଦୟ "ଛେଉକା ଓକିଲ" ବୋଲି କଟାକ୍ଷ କରିଥିଲେ, ମନେହୁଏ ସେ ମଧୁବାବୁଙ୍କ ଜୀବନଧାରା ବିଷୟରେ କିଛି ଜାଣି ନଥିଲେ, କିମ୍ବା ଈର୍ଷା ପରାୟଣ ହୋଇ ନିନ୍ଦୁକ ସାଜିଥିଲେ। ସମ୍ପାଦକ ଭାବେ ଉଚ୍ଚ ଚିନ୍ତାକାରୀ ଆଦର୍ଶବାଦୀ ହେବା ପରିବର୍ତ୍ତେ ସେ ନୀଚ ଚିନ୍ତାକାରୀ ପର ନିନ୍ଦୁକ ହୋଇଯାଇଥିଲେ। ଏହାହିଁ ଦୁଃଖର ବିଷୟ। ସେ କଥା ଛାଡି ଆସନ୍ତୁ, ସୁରେନ୍ଦ୍ର ବାବୁଙ୍କ ଉକ୍ତି ନିକଟକୁ ଯିବା।

ସୁରେନ୍ଦ୍ରବାବୁ : "ଓଡିଶା ପ୍ରଦେଶ ଗଠିତ ହେବା ପରେ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଓ ନିତ୍ୟାନନ୍ଦ କାନୁନ୍‌ଗୋ ସେଥିରୁ ଲାଭ ଉଠାଇଛନ୍ତି ବେଶୀ। କାରଣ, ସ୍ୱତନ୍ତ୍ର ପ୍ରଦେଶ ହେବାରୁ ଏଇମାନେ ଓଡିଶାର ମୁଖ୍ୟମନ୍ତ୍ରୀ, ଓ ମନ୍ତ୍ରୀ ହୋଇପାରିଥିଲେ । ମାତ୍ର ଓଡିଶା ପ୍ରଦେଶ ଗଠନ ପ୍ରସ୍ତାବକୁ ବିରୋଧ କରି ଆନ୍ଦୋଳନ ବେଳେ ଏମାନେ ଥିଲେ ଶତଜିହ୍ୱ । ମଧୁସୂଦନଙ୍କ କୁଶପୁତ୍ତଳିକା ସୁଦ୍ଧା କଟକ ସହରରେ ଦାହ କରିବାକୁ ଏମାନେ କୁଣ୍ଠିତ ନଥିଲେ । XXX ଏମାନେ ତେଣୁ ସ୍ୱାଭାବିକ ଭାବରେ ଇତିହାସ ପୃଷ୍ଠାରୁ ମଧୁସୂଦନଙ୍କୁ ଲୁଚାଇ ଦେବା ପାଇଁ ଭାରି ଚେଷ୍ଟିତ ଥିଲେ । ମଧୁସୂଦନଙ୍କ ପାଳିତା କନ୍ୟା ଶୈଳବାଳା ଦାସଙ୍କ ପାଖରୁ ଶୁଣିଛି ,

ମଧୁସୂଦନଙ୍କ ଜୀବନୀ ଲେଖିବା ଆଳରେ, ଦୁଇଜଣ କଂଗ୍ରେସ ନେତା ମଧୁସୂଦନଙ୍କ ସମ୍ପର୍କିତ ବହୁ ମୂଲ୍ୟବାନ କାଗଜ ପତ୍ର ତାଙ୍କଠାରୁ ମାଗିନେଲେ । ଜୀବନୀ ତ ଲେଖିଲେ ନାହିଁ, ତାହା ଫେରାଇଲେ ସୁଦ୍ଧା ନାହିଁ । ଶୈଳବାଳା ଦାସ ମତେ କାନ୍ଦି କାନ୍ଦି କହିଛନ୍ତି, ବମ୍ବେରେ ରାଜ୍ୟପାଳ ଥିବାବେଳେ ମହତାବ ବାବୁ ବହୁ କାଗଜ ପତ୍ର ମାଗି ନେଇଥିଲେ ମଧୁବାବୁଙ୍କ ଜୀବନୀ ଲେଖିବାକୁ , କିନ୍ତୁ ଫେରାଇଲେ ନାହିଁ । ସେହିପରି ରାଧାନାଥ ରଥ ମଧ୍ୟ ଜୀବନୀ ଲେଖିବା ପାଇଁ ଆଉ ଯାହା ଅବଶିଷ୍ଟ ଥିଲା, ସେଥିରୁ ଗୋଟାଏ ବିପୁଳ ଅଂଶ ନେଇଗଲେ । ମାତ୍ର ମଧୁସୂଦନଙ୍କ ଜୀବନୀ ତ ଦିବାଲୋକ ଦେଖିଲା ନାହିଁ, ତା ସହିତ ସେ ସବୁ କାଗଜ ପତ୍ର ବି" XXX । (ପଥ ଓ ପୃଥିବୀ- ସୁରେନ୍ଦ୍ର ମହାନ୍ତି ସୌଜନ୍ୟରୁ) ।

ଯେଉଁ ଗୋପବନ୍ଧୁ ଓଡିଶା ସତ୍ତାଲୋପ ଚାହୁଁଥିଲେ, ଯେଉଁ ମହତାବ ଓଡିଶା ରାଜ୍ୟ ଗଠନ ଚାହୁଁନଥିଲେ, ଭାଗ୍ୟର ବିଡମ୍ବନା ଆଜି ଓଡିଶାର ଚାରିଆଡ ଗୋପବନ୍ଧୁ ଓ ମହତାବ ମୟ। ମଧୁବାବୁ ବିସ୍ମୃତ। ଗୋପବନ୍ଧୁ ବାବୁ ଓ ମହତାବ ବାବୁ ତାଙ୍କର ସୀମିତ କାର୍ଯ୍ୟକ୍ରମ ମଧ୍ୟରେ ମହାନ୍ । କିନ୍ତୁ ମଧୁବାବୁଙ୍କ ପରି ଓଡିଶା ରାଜ୍ୟଗଠନ କରି ତାର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ପରିକଳ୍ପିତ କାର୍ଯ୍ୟକ୍ରମର ସମକକ୍ଷ ନୁହଁନ୍ତି । ଯେପରି ଏକ ନମ୍ବର ପରେ ଦୁଇ ନମ୍ବର ସର୍ବଦା ଆସେ, ସେହିପରି ଏକନମ୍ବର ଓଡିଆ ମଧୁବାବୁଙ୍କୁ ଆଗ ସମ୍ମାନ ଦେବା ପରେ ଅନ୍ୟ ମାନଙ୍କୁ ଦିଆଯିବା ସୁନ୍ଦର ଓ ସମୀଚୀନ ।

ମଧୁବାବୁଙ୍କ ଜନ୍ମଶତବାର୍ଷିକୀ ମହତାବ ବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟ ୧୯୪୮ ମସିହାରେ ପାଳନ କରାଗଲା ନାହିଁ । ମଧୁବାବୁଙ୍କ ୧୫୦ବର୍ଷ ପୂର୍ତ୍ତି ଜନ୍ମଦିବସ ପାଳନ କରିବାକୁ ଶ୍ରୀ ସୁରସିଂହ ପଟ୍ଟନାୟକ ଓ ଆଉ କେତେକ ଉତ୍ସାହୀ ବ୍ୟକ୍ତି ୧୯୯୮ ମସିହାରେ ସେ ସମୟର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନିକଟରେ ଆଗ୍ରହ ପ୍ରକାଶ କଲେ । ସେଥିପ୍ରତି ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ଗୁରୁତ୍ୱ ନଥିବାରୁ ସେ ଏକ କମିଟି ଗଠନ କରିଦେଲେ

ଏବଂ ସେଥିରେ ସେ ସଭାପତି ରହିଲେ ନାହିଁ । ସେ କମିଟି ମଧୁବାବୁଙ୍କ ଉପଯୁକ୍ତ ସ୍ମୃତି ପାଳନ ନିମନ୍ତେ କେତେଗୁଡିଏ ପ୍ରସ୍ତାବ ଦେଲେ । ତା ମଧ୍ୟରେ ଗୋଟିଏ ପ୍ରସ୍ତାବ ଥିଲା; ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ କରି ମଧୁବାବୁଙ୍କ ମୂର୍ତ୍ତି ପ୍ରତିଷ୍ଠା କରିବା; ଯେଉଁଥିପାଇଁ ୩୩ ଲକ୍ଷ ଟଙ୍କା ଖର୍ଚ୍ଚ କରିବାର ହିସାବ କରାଯାଇଥିଲା ।ଏହାଛଡା ଆଉ କେତେଗୁଡିଏ ପାଳନୀୟ ପ୍ରସ୍ତାବ ଥିଲା ।

ପ୍ରସ୍ତାବ ଗୁଡିକ ଅନୁମୋଦନ କରି ମୁଖ୍ୟମନ୍ତ୍ରୀ ସରକାରର ନିମ୍ନସ୍ତରକୁ ପଠାଇ ଦେଲେ । କିନ୍ତୁ ସେ ସମୟର ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ମୋହନ ମିଶ୍ର, ଜଣେ ଓଡିଆ, (ଓଡିଶାରେ ବହୁ ଅଣଓଡିଆ ମୁଖ୍ୟ ଶାସନ ସଚିବ ହୋଇଛନ୍ତି) ଲେଖିଦେଲେ ଯେ, ସରକାରଙ୍କ ନିକଟରେ ଏଥିପାଇଁ ଏତେ ଟଙ୍କା ନାହିଁ । ସେଥିପାଇଁ ସେସବୁ ପ୍ରସ୍ତାବିତ ସ୍ମୃତି ପାଳନ କାର୍ଯ୍ୟକ୍ରମ ବନ୍ଦ ହୋଇଗଲା । ମୁଖ୍ୟମନ୍ତ୍ରୀ ଅସହାୟ ହୋଇ ନୀରବ ରହିଗଲେ । ଯାହାଙ୍କ ଯୋଗୁଁ ରାଜ୍ୟ, ରାଜ୍ୟସରକାର ଏବଂ ମୁଖ୍ୟମନ୍ତ୍ରୀତ୍ୱ ତାଙ୍କ ପାଇଁ ୩୩ ଲକ୍ଷ ଟଙ୍କା ସରକାରଙ୍କର ନଥିଲା । କିନ୍ତୁ ଜାନକୀବାବୁ ଓ ଚିଫ୍ ସେକ୍ରେଟାରୀଙ୍କର ବିଦେଶ ଟୁରରେ କୋଟି କୋଟି ଟଙ୍କା ଖର୍ଚ୍ଚ ହୋଇଥିବ ରାଜ୍ୟପାଇଁ ବିନା ଉପକାରରେ । ରାଜ୍ୟର ମନ୍ତ୍ରୀ ଏବଂ ଅଫିସରଙ୍କ ଟୁର୍‌ରେ ବୋଧେ ୩୩ ଲକ୍ଷ ଟଙ୍କାରୁ ବେଶୀ ଖର୍ଚ୍ଚ ହୋଇଥିବ । ଜାନକୀବାବୁ, ସୁରେନ୍ଦ୍ର ସାଏଙ୍କ ସ୍ମୃତିରକ୍ଷା କମିଟିରେ ଏବଂ ମହତାବ ବାବୁଙ୍କ ସ୍ମୃତିରକ୍ଷା କମିଟିରେ ସଭାପତି ହୋଇ ବହୁ କାମ କରିଥିଲେ । ଭୁବନେଶ୍ୱର ରାଜରାସ୍ତାରେ ମହତାବ ବାବୁଙ୍କ ପୂର୍ଣ୍ଣାଙ୍ଗ ମୂର୍ତ୍ତି ପ୍ରତିଷ୍ଠା କଲେ ଓ ଅନ୍ୟ ଉତ୍ସବ ସବୁ ପାଳନକଲେ । ଶ୍ରୀ ବଲ୍ଲଭ ବାବୁଙ୍କ ଲେଖାରୁ ଜାଣିହେବ ସୁରେନ୍ଦ୍ରଙ୍କ ନିମନ୍ତେ କେତେ କଣ କରିଛନ୍ତି । ୧୯୯୮ରେ ସେହି କମିଟି କେନ୍ଦ୍ର ସରକାରଙ୍କୁ ଅନୁରୋଧ କରିଥିଲେ ମଧୁବାବୁଙ୍କ ସ୍ମାରକୀ ଭାବେ ଏକ ଡାକଟିକଟ ପ୍ରକାଶ କରିବାକୁ । କିନ୍ତୁ କେନ୍ଦ୍ର ସରକାରଙ୍କର ଡାକ ବିଭାଗ ତାହା କରିବାକୁ ମନା କରିଦେଲା । ଉତ୍କଳ ସମ୍ମିଳନୀ ତରଫରୁ ମଧୁବାବୁଙ୍କ ଦେଢଶହ ବର୍ଷ ପୂର୍ତ୍ତି ଉତ୍ସବରେ ଏକ ମୁଦ୍ରା ପ୍ରଚଳନ କରିବାକୁ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଯାଇଥିଲା ଉତ୍ସବର ବହୁ ପୂର୍ବରୁ । ତାହା ବି ପ୍ରତ୍ୟାଖ୍ୟାନ ହୋଇଥିଲା ।

ତେବେ ଓଡିଶା ବାର କାଉନସିଲଙ୍କୁ ଧନ୍ୟବାଦ ଦେବାକୁ ହେବ ଯେ, ମଧୁବାବୁଙ୍କ ଜନ୍ମ ଦିବସକୁ ବାରକାଉନସିଲଙ୍କ ନିଷ୍ପତିକ୍ରମେ ଓଡିଶାର ସବୁ ବାର ଆସୋସିଏସନ ୧୯୯୮ ମସିହାରୁ ପ୍ରତିବର୍ଷ "ଓକିଲ ଦିବସ" ଭାବେ ମଧୁବାବୁଙ୍କ ଜନ୍ମ ଦିବସକୁ ପାଳନ କରି ଆସୁଅଛନ୍ତି । ଶୁଣିବାକୁ ପାଉଛି, ଓଡିଶା ବାର୍ କାଉନସିଲ୍ ଚଳିତ ବର୍ଷରୁ ମଧୁବାବୁଙ୍କ ନାମରେ ଏକ ଆୱାର୍ଡ ବା ପୁରସ୍କାର ସର୍ବ ଭାରତୀୟ ସ୍ତରରେ ପ୍ରଦାନ କରିବାକୁ ଯାଉଛନ୍ତି । ତାହା ଯଦି ହୋଇପାରେ, ତେବେ ମଧୁବାବୁ ଏବଂ ଓଡିଶା ପାଇଁ ତାହା ହେବ ଗୌରବର ବିଷୟ ।

ଏତ ଗଲା ମଧୁବାବୁଙ୍କ ଶତବାର୍ଷିକୀ ଏବଂ ଦେଢଶହବାର୍ଷିକୀ ଜନ୍ମ ଉତ୍ସବ ପାଳନ କରିବା କଥା ସରକାରଙ୍କ ଦ୍ୱାରା । ମହାପୁରୁଷ ମାନଙ୍କର ସ୍ମୃତି ରକ୍ଷା କରାଯାଏ, ସେମାନଙ୍କର ଜନ୍ମପୀଠ ଓ କର୍ମପୀଠ ମାନଙ୍କରେ । ମଧୁବାବୁଙ୍କର ଦାୟାଦ କେହି ନଥିବାରୁ ତାଙ୍କର ଜନ୍ମସ୍ଥାନ ସତ୍ୟଭାମାପୁରରେ ଥିବା ଘରବାଡି ଅଳ୍ପ ଦାମରେ ବିକ୍ରୀ ହେଉଥିବା ଶୁଣିବାକୁ ପାଇ ତାଙ୍କର ଝିଆରୀ ପ୍ରାତଃ ସ୍ମରଣୀୟା ରମାଦେବୀ ତାହାକୁ କୌଣସି ବ୍ୟକ୍ତି ବିଶେଷଙ୍କ ସମ୍ପତ୍ତି ହେବାକୁ ନଦେଇ "କସ୍ତୁରବା ଟ୍ରଷ୍ଟ ଫଣ୍ଡ" ତରଫରୁ ତାହା ଖରିଦ କରି ଜନକଲ୍ୟାଣ କାର୍ଯ୍ୟରେ ନିୟୋଜିତ କରିଛନ୍ତି । ସରକାର ତାକୁ ହାତେଇନେଇ ପାରିଲେ ନାହିଁ । ସ୍ମାରକୀ ପ୍ରତିଷ୍ଠା ହେବ କିପରି ? ଦୁଇବର୍ଷ ତଳେ ରାଜ୍ୟ ସରକାର ଉତ୍କଳର ଅନ୍ୟ ବରପୁତ୍ର ଗୋପବନ୍ଧୁ ଦାସ୍, ଫକୀର ମୋହନ ସେନାପତି, ହରେକୃଷ୍ଣ ମହତାବ ଓ ବିଜୁ ପଟ୍ଟନାୟକଙ୍କ ଜନ୍ମସ୍ଥାନମାନଙ୍କୁ ଜାତୀୟ ସ୍ମୃତିପୀଠ ଭାବେ ଘୋଷଣା କରି ସଂସ୍କୃତି ବିଭାଗ ପକ୍ଷରୁ ଆବଶ୍ୟକ ଖର୍ଚ୍ଚ ବ୍ୟବସ୍ଥା କରିବା ବେଳେ ଉତ୍କଳଗୌରବ ମଧୁସୁଦନଙ୍କ ଜନ୍ମପୀଠ ସତ୍ୟଭାମାପୁର ଘରକୁ ସ୍ମୃତିପୀଠ ଭାବେ ଘୋଷଣା କଲେ ନାହିଁ । ଅଥଚ ସତ୍ୟଭାମାପୁର ଗାଁରେ ଥିବା ମଧୁବାବୁଙ୍କ ଘରେ ମହାତ୍ମା ଗାନ୍ଧୀ ୧୯୩୪ ମସିହାରେ ବିଶ୍ରାମ ନେଇଥିଲେ । ଅନ୍ତତଃ ରାଷ୍ଟ୍ର ପିତାଙ୍କ ସ୍ପର୍ଶଲାଭ କରିଥିବା କୋଠାକୁ ସରକାର ଜାତୀୟ ସ୍ମୃତିପୀଠ ଭାବେ ଘୋଷଣା କରିବାର ଥିଲା । ସେହିପରି ମଧୁବାବୁଙ୍କ କର୍ମପୀଠ କଟକ ସ୍ଥିତ କୋଠା ଏବଂ କୋଠା ସଂଲଗ୍ନ

ବିସ୍ତୀର୍ଣ୍ଣ ଘରବାରି  ମାଗଣାରେ ଶୈଳବାଳା ଦାସ ମଧୁବାବୁଙ୍କ ସ୍ମୃତିପୀଠ ଭାବେ ପ୍ରତିଷ୍ଠା କରିବା ନିମନ୍ତେ ଗଭର୍ଣ୍ଣରଙ୍କ ମାଧ୍ୟମରେ ସରକାରଙ୍କୁ ଦାନ କରିଦେଇଥିଲେ ୧୯୫୨ ମସିହାରେ । ସରକାର ସେଠାରେ ଶୈଳବାଳା ମହିଳା କଲେଜ କରି ସ୍ମୃତିପ୍ରତିଷ୍ଠା କରିବା କଥା ଭୁଲିଗଲେ । ମଧୁବାବୁଙ୍କ ବ୍ୟବହୃତ ଅନେକ ଦ୍ରବ୍ୟ ଶୈଳବାଳା ନାନା ସ୍ଥାନରୁ ସଂଗ୍ରହ କରି ମଧୁବାବୁଙ୍କ କୋଠାର ଉପର ମହଲାରେ ସଜାଇ ଦେଇଥିଲେ ସ୍ମୃତି ଭବନ ହେବା ମାନସରେ । କିନ୍ତୁ ଏବେ ସେ ବ୍ୟବହୃତ ଦ୍ରବ୍ୟମାନଙ୍କ ମଧ୍ୟରୁ ଅନେକ ଅପସାରିତ ଏବଂ ବାକି ଯାହାଅଛି ତାହା ଏକ ଗୋଦାମ ଘରେ ଅବରୁଦ୍ଧ । ଏହା  ମଧୁବାବୁଙ୍କ ପ୍ରତି ଅବମାନନା ନୁହେଁକି ?

ନବୀନ ବାବୁ ଅତି ଉତ୍ସାହର ସହିତ ଖୁବ ଅଳ୍ପ ଦିନ ମଧ୍ୟରେ ବିଜୁ ସ୍ମୃତି ଭବନ ୩ କୋଟି ୪୬ ଲକ୍ଷ ଟଙ୍କା ଖର୍ଚ୍ଚରେ ନିର୍ମାଣ କରି ନିକଟରେ ଅତୀତର କେଇ ଦିନ ତଳେ ତାହା ଉଦ୍‌ଘାଟିତ କରି ଓଡିଶାକୁ ଗୌରବାନ୍ୱିତ କରିଛନ୍ତି । ବର୍ତ୍ତମାନ ଆଶା କରିବା କଥା ସେହିପରି ଉତ୍ସାହର ସହ ସେ ମଧୁବାବୁଙ୍କ ସ୍ମୃତି ଭବନ ନିର୍ମାଣ କରିବେ । ଓଡିଶାର ଜନଗଣ ଏଥି ନିମନ୍ତେ ତାଙ୍କ ନିକଟରେ ଦାବି କରିବା ମଧ୍ୟ ସମୀଚୀନ ।

ସେହି କଟକ କୋଠାରେ ମହାତ୍ମା ଗାନ୍ଧୀ ମଧୁବାବୁଙ୍କର ଆତିଥ୍ୟ ଗ୍ରହଣ କରି ୧୯୨୫ ଓ ୧୯୨୭ ମସିହାରେ ଦୁଇଥର ମଧୁବାବୁଙ୍କ ସହ କେତେ ଦିନ କଟାଇଥିଲେ । ମଧୁବାବୁଙ୍କ ସହ ନାନା ବିଷୟ ଆଲୋଚନା କରି ଗାନ୍ଧୀଜୀ ତାଙ୍କୁ "ପଥ ପ୍ରଦର୍ଶକ" ବୋଲି ପ୍ରକାଶ କରିଥିଲେ । ସେହି କୋଠାରେ ଜାତିର ପିତା ରହିଥିବାରୁ ତାକୁ ଜାତୀୟ ସ୍ମୃତିପୀଠ ଭାବେ ଅନ୍ତତଃ ପ୍ରତିଷ୍ଠା କରିବା ଉଚିତ୍ । ଏହି ନିକଟ ଅତୀତରେ ମୁଖ୍ୟମନ୍ତ୍ରୀ ବାବୁ ଶ୍ରୀ ନବୀନ ପଟ୍ଟନାୟକ କଟକର "ମଧୁଭବନରେ" ଘୋଷଣା କରିଥିଲେ ଯେ, ଏକକୋଟି ଟଙ୍କାରୁ  ଉର୍ଦ୍ଧ୍ୱ ଖର୍ଚ୍ଚରେ ମଧୁବାବୁଙ୍କର ସ୍ମୃତିପୀଠ  ପ୍ରତିଷ୍ଠା କରାଯିବ । କିନ୍ତୁ ସେ ଘୋଷଣା ଘୋଷଣାରେ ରହିଗଲା । କିନ୍ତୁ ସରକାର ଟଙ୍କା ଦେଇ ଜାନକୀ ବୋଷଙ୍କ କୋଠା କିଣି ସୁଭାଷ ବୋଷଙ୍କ ସ୍ମାରକୀ ବହୁ ଆଗ୍ରହ ଓ ବଡ ଆଡମ୍ବର ସହ ଧୁମଧାମ୍‌ରେ ଆରମ୍ଭ କରି ନାନା ଉତ୍କର୍ଷ ସାଧନ କରିଚାଲିଛନ୍ତି । ସୁଭାଷ ବୋଷ ଓଡିଶାରେ ଜନ୍ମ ହୋଇ ଓଡିଶାର ପାଣି ପବନରେ ବଢିଛନ୍ତି । ନିଃସନ୍ଦେହରେ ସେ ଜାତୀୟ ବୀର । ଭାରତର ସ୍ୱାଧୀନତା ନିମନ୍ତେ ସୁଭାଷ ବୋଷ ଏବଂ ତାଙ୍କ ଆଇ.ଏନ.ଏ.ର ତ୍ୟାଗ ଓ

ଅବଦାନ ବହୁଳାଂଶରେ ଦାୟୀ । ନିଃସନ୍ଦେହରେ ସେ ଦେଶର ପୂଜ୍ୟ । କିନ୍ତୁ ଓଡିଶା ଗଠନ ନିମନ୍ତେ ଓ ଓଡିଶା ପାଇଁ ସେ କିଛି କରିନାହାନ୍ତି । ଅପ୍ରିୟ ହେଲେ ବି ଏହାହିଁ ସତ୍ୟ।

ମଧୁବାବୁଙ୍କ ଜାତୀୟ ସ୍ମୃତି ପ୍ରତିଷ୍ଠା ପରେ ସୁଭାଷ ବୋଷଙ୍କ ଜାତୀୟ ସ୍ମୃତି ପ୍ରତିଷ୍ଠା କରିବା ଉପଯୁକ୍ତ କାର୍ଯ୍ୟ ହୋଇଥାନ୍ତା । ମଧୁବାବୁଙ୍କ ଦ୍ୱିତୀୟ କର୍ମକ୍ଷେତ୍ର କଲିକତା ଥିଲା । କଲିକତାର କନ୍ୟା ବିବାହ କରିଥିଲେ । ତାଙ୍କର କଲିକତାର ବନ୍ଧୁଙ୍କ ଦ୍ୱାରା ପରିତ୍ୟକ୍ତ ପରିବାରର ବଡ ଝିଅକୁ ପୋଷ୍ୟାକନ୍ୟା କରିଥିଲେ । ଦ୍ୱିତୀୟ କନ୍ୟାକୁ ଭାରତର ପ୍ରଥମ ଆଡଭୋକେଟ କରାଇଥିଲେ । ୩ୟ ପୁତ୍ରକୁ ବାରିଷ୍ଟର କରି ଅନ୍ୟ ପୁଅଙ୍କୁ ଉପଯୁକ୍ତ କରିଥିଲେ । କିନ୍ତୁ ଦଶନ୍ଧି ଦଶନ୍ଧି ଧରି ଅନୁରୋଧ କଲେ ମଧ କଲିକତାରେ ମଧୁବାବୁଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା କରିବା ନିମନ୍ତେ, ମନେହୁଏ ଆଜି ପର୍ଯ୍ୟନ୍ତ ଟିକିଏ ଜାଗା ମିଳିଲା ନାହିଁ । ଏହାହିଁ ବିଡମ୍ବନା ।

ଏତଗଲା ଜନ୍ମସ୍ଥାନ ଓ କାର୍ଯ୍ୟସ୍ଥାନର ସ୍ମାରକୀ ପ୍ରତିଷ୍ଠା କରିବା କଥା । ରାଜରାସ୍ତା ପାର୍ଶ୍ୱରେ ମୂର୍ତ୍ତି ପ୍ରତିଷ୍ଠା କରି ସ୍ମାରକୀ ମାନ ପ୍ରତିଷ୍ଠା କରାଯାଏ । ଭୁବନେଶ୍ୱର ଟାଉନ୍ ଏବଂ ବିଧାନସଭା ପରିସରରେ ଗୋପବନ୍ଧୁଙ୍କ ମୂର୍ତ୍ତି ପ୍ରଥମେ ପ୍ରତିଷ୍ଠିତ ହୋଇଥିଲା । କଟକ ଓ ଭୁବନେଶ୍ୱର ମୁଖ୍ୟ ଛକମାନଙ୍କରେ ନେତାଜୀ ସୁଭାଷ ବୋଷ, ପଣ୍ଡିତ ନେହେରୁ, ଡ଼. ଆମ୍ବେଦକର ପ୍ରଭୃତି ବହୁ ନେତାଙ୍କର ଓ ଓଡିଶାର କେତେକ ନେତାଙ୍କର ମୂର୍ତ୍ତି ପ୍ରତିଷ୍ଠା କରାଯାଇଛି। ମନେହୁଏ, ଓଡିଶାରେ ପ୍ରଥମ କରି ରାଉରକେଲା ରାଜରାସ୍ତାରେ ବେସରକାରୀ ଉଦ୍ୟମରେ "ପ୍ରଗତି ଉତ୍କଳ" ସଂଘ ଅନୁଷ୍ଠାନ ଓ ସର୍ବସାଧାରଣଙ୍କ ଦ୍ୱାରା ମଧୁବାବୁଙ୍କ ପୂର୍ଣ୍ଣାଙ୍ଗ ମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା ୧୯୭୦ ଦଶକରେ, ମଧୁବାବୁଙ୍କ ମୂର୍ତ୍ତି ବଦଳରେ ଗୋପବାବୁଙ୍କ ମୂର୍ତ୍ତି ପ୍ରତିଷ୍ଠା କରିବା ପାଇଁ ଗୁପ୍ତ ମନ୍ତ୍ରଣା ଓ ନାନା ବିଧ ପ୍ରବଳ ଚେଷ୍ଟାର ବିରୋଧାତ୍ମକ ପୃଷ୍ଠ ଭୂମିରେ । କଟକରେ ୧୯୮୭ ମସିହାରେ ମ୍ୟୁନିସିପାଲିଟି ତରଫରୁ କ୍ୟାଣ୍ଟନମେଣ୍ଟ ରୋଡରେ ମଧୁବାବୁଙ୍କର ପୂର୍ଣ୍ଣାବୟବ ମୂର୍ତ୍ତି ପ୍ରତିଷ୍ଠା କରାଗଲା । ମନେହୁଏ, ସେହି ଅଶୀଦଶକରେ ସେ ସମୟର ବିଧାନସଭା ବାଚସ୍ପତି ପ୍ରସନ୍ନ ବାବୁ, ଆସେମ୍ବଲି ଖର୍ଚ୍ଚ ଜମାରୁ ଟଙ୍କା ସଞ୍ଚୟକରି ମଧୁବାବୁଙ୍କର ପୂର୍ଣ୍ଣାବୟବ ମୂର୍ତ୍ତି ବିଧାନସଭାର ପରିସରରେ ପ୍ରତିଷ୍ଠା କଲେ । ଏଥିରେ ସରକାରଙ୍କର କିଛି ସାହାଯ୍ୟ ଓ ସହଯୋଗ ନଥିଲା । ଯଦିଓ ରାଜଧାନୀ ପ୍ରତିଷ୍ଠିତ ହେବାମାତ୍ରେ

ଏବଂ ବିଧାନସଭା ଗୃହ ନିର୍ମିତ ହେବା ସଙ୍ଗେ ସଙ୍ଗେ ମଧୁବାବୁଙ୍କ ମୂର୍ତ୍ତି ଆଗ ପ୍ରତିଷ୍ଠିତ ହେବା ଉଚିତ ଥିଲା । ଶୁଣିଛି, ସତକି ମିଛ ଜାଣିନାହିଁ, ବିଜୁ ପଟ୍ଟନାୟକ ତାଙ୍କ ଟେବୁଲ ଉପରେ ମଧୁବାବୁଙ୍କ ଫଟୋ ରଖି ପ୍ରତିଦିନ ନମସ୍କାର କରୁଥିଲେ । କିନ୍ତୁ ଆମ ଜାଣିବାରେ ସେ ମଧୁବାବୁଙ୍କ ନିମନ୍ତେ କିଛି କରିନାହାନ୍ତି । ନବୀନବାବୁ ଓଡିଆ ଭାଷା ନ ଜାଣି ଓଡିଆ ଭାଷା ଭିତ୍ତିରେ ଗଠିତ ଓଡିଶା ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇ ଅନ୍ୟମାନଙ୍କ ଅନୁରୋଧରେ ସରକାରଙ୍କ ତରଫରୁ ପ୍ରତିଷ୍ଠିତ କଲେ ଭୁବନେଶ୍ୱର ରାଜରାସ୍ତାରେ ମଧୁବାବୁଙ୍କର ପୂର୍ଣ୍ଣାବୟବ ମୂର୍ତ୍ତି ୨୦୦୧ ମସିହାରେ । ସେଥିପାଇଁ ସେ ଧନ୍ୟବାଦାର୍ହ । କିନ୍ତୁ ଏହାଛଡା ବିଜୁବାବୁଙ୍କର ମୂର୍ତ୍ତି ଓଡିଶାର ଚାରିଆଡେ ପ୍ରତିଷ୍ଠା କରି ଚାଲିଥିଲେ ମଧ ମଧୁବାବୁଙ୍କ ମୂର୍ତ୍ତି ଅନ୍ୟ କେଉଁଠି ପ୍ରତିଷ୍ଠା କରି ନାହାନ୍ତି । ମଧୁବାବୁଙ୍କ ପରେ ଓଡିଶାର ଦ୍ୱିତୀୟ ନେତା ହେଉଛନ୍ତି ବିଜୁବାବୁ । ତେଣୁ ବିଜୁବାବୁଙ୍କ ପାଇଁ ଯାହା କରୁଛନ୍ତି କରନ୍ତୁ । କିନ୍ତୁ ମଧୁବାବୁଙ୍କୁ ଭୁଲିନଯାନ୍ତୁ । କାରଣ ମଧୁବାବୁ ଓଡିଶା ପ୍ରଦେଶ ଗଠନ କରିନଥିଲେ, ବିଜୁବାବୁ କି ନବୀନବାବୁ ମୁଖ୍ୟମନ୍ତ୍ରୀ ହୋଇନଥାନ୍ତେ । ବ୍ୟକ୍ତିଗତ ଭାବେ ଶ୍ରୀ ସୁରସିଂହ ପଟ୍ଟନାୟକ ୨୦୦୪ ମସିହାରେ ବ୍ରହ୍ମପୁର ରାଜରାସ୍ତା କଡରେ ଏବଂ ୨୦୦୬ ମସିହାରେ ପୁରୀ ରାଜରାସ୍ତା କଡରେ ପ୍ରତିଷ୍ଠା କଲେ ମଧୁବାବୁଙ୍କର ପୂର୍ଣ୍ଣାବୟବ ମୂର୍ତ୍ତି ନିଜ ଖର୍ଚ୍ଚରେ । ଗତ ବର୍ଷ ତା. ୦୪.୦୨.୨୦୦୯ ରିଖ ମଧୁବାବୁଙ୍କର ଶ୍ରାଦ୍ଧ ଦିବସରେ ପୁରୀର ପ୍ରସିଦ୍ଧ ସ୍ଥପତି ଶ୍ରୀ ପ୍ରଫୁଲ୍ଲ ବେହେରା ସ୍ୱତଃପ୍ରବୃତ୍ତ ଭାବେ ମଧୁବାବୁଙ୍କର ଏକ ପୂର୍ଣ୍ଣାବୟବ ମୂର୍ତ୍ତି ଦାନ କରିବାରୁ ସର୍ବ ସାଧାରଣ ତାହା ମଧୁବାବୁଙ୍କର ଜନ୍ମ ସ୍ଥାନ ସତ୍ୟଭାମାପୁରରେ ପ୍ରତିଷ୍ଠା କରିଛନ୍ତି । ବିଧାୟକ ଶ୍ରୀ କାଳନ୍ଦୀ ବେହେରାଙ୍କ ଉଦ୍ୟମରେ କଟକ-କେନ୍ଦ୍ରାପଡା ମୁଖ୍ୟରାସ୍ତା ପାର୍ଶ୍ୱରେ ସାଲେପୁର ଠାରେ ମଧୁଭବନ ନାମରେ ଏକ ଗୃହ ନିର୍ମାଣ କରାଯାଇ ତାହା ମଧ୍ୟରେ ମଧୁବାବୁଙ୍କ ମୂର୍ତ୍ତି ପ୍ରତିଷ୍ଠା କରାଯାଇଛି । ବାବୁ ପ୍ରକାଶ ବେହେରା, ଯୁବ ସମାଜ ସେବୀଙ୍କ, ଉଦ୍ୟମରେ କଟକ-କେନ୍ଦ୍ରାପଡା ରାସ୍ତାକଡରେ ସାଲେପୁର-କୁଆଁପାଳ ଛକ ଠାରେ ମଧୁବାବୁଙ୍କ ଏକ ମୂର୍ତ୍ତି ପ୍ରତିଷ୍ଠା କରାଯାଇଛି । ୧୯୯୮ ମସିହାରେ ଉତ୍କଳ

ସମ୍ମିଳନୀ କର୍ମକର୍ତ୍ତାଙ୍କ ଉଦ୍ୟମରେ ଛତିଶଗଡ ରାଜ୍ୟର ରାଜଧାନୀ ରାୟପୁର ସହରର କେନ୍ଦ୍ର ସ୍ଥଳରେ ରାଜ୍ୟପାଳଙ୍କ ଭବନର ଅନତିଦୂରରେ ଥିବା ଏକ ଛକକୁ ମଧୁସୂଦନ ଚୌକ ନାମରେ ନାମିତ କରାଯାଇ ସେଠାରେ ମଧୁବାବୁଙ୍କର ଏକ ମୂର୍ତ୍ତି ପ୍ରତିଷ୍ଠା କରାଯାଇଛି । କିନ୍ତୁ ଓଡିଶାରେ କିଛି କରାଯାଇ ପରିଲା ନାହିଁ ।

ମଧୁବାବୁଙ୍କ ଦ୍ୱାରା ଗଠିତ ଓଡିଶାର ମନ୍ତ୍ରୀ ଗାଦିରେ ବସି ନେତାମାନେ ମଧୁବାବୁଙ୍କୁ ସମ୍ପୂର୍ଣ୍ଣ ରୁପେ ଜନମାନସରୁ ବିଲୁପ୍ତ କରିବାକୁ ଚାହାନ୍ତି । ନେତାଜୀ ସୁଭାଷ ବୋଷ ଓ ବୀର ସୁରେନ୍ଦ୍ର ସାଏ  ଜାତୀୟ ନେତା ଏବଂ ସେମାନଙ୍କ ନିମନ୍ତେ ଓଡିଶା ସରକାର ଯାହା କରିଛନ୍ତି ତାହା ନିଶ୍ଚୟ ଏକ ମହାନ୍ କାର୍ଯ୍ୟ । କିନ୍ତୁ ମଧୁବାବୁଙ୍କୁ ମୂଲ୍ୟ ନଦେଇ ତାଙ୍କୁ ଭୁଲିଯିବା ଅକ୍ଷମଣୀୟ ତ୍ରୁଟି  ।

ଓଡିଶା ରାଜ୍ୟ ଗଠନ କରିଥିବା ଓଡିଆ ଜାତିର ଜନକ ମଧୁବାବୁ କୌଣସି ଗୁଣରେ ଜାତୀୟ ଗରିମାରୁ କମ୍ ନୁହନ୍ତି । କଂଗ୍ରେସବାଲା ତାଙ୍କୁ ଜାତୀୟ ନେତୃବୃନ୍ଦ ମଧ୍ୟରେ ସ୍ଥାନ ନଦେଲେ ମଧ ସେ ଜାତୀୟ ନେତୃମଣ୍ଡଳୀମାନଙ୍କ ମଧରେ ଜଣେ ଥିଲେ । ୧୮୮୫ରେ ବମ୍ବେ ଠାରେ ଜାତୀୟ କଂଗ୍ରେସ ପ୍ରତିଷ୍ଠା କରାଗଲା । ସେ ଅନୁଷ୍ଠାନ ପ୍ରତିଷ୍ଠା ହେବାକୁ ଯାଉଥିବା ବିଷୟ ବିଶେଷ ଭାବେ ପ୍ରଚାରିତ ହୋଇନଥିବାରୁ ସେହି ୧୮୮୫ ମସିହାରେ ସୁରେନ୍ଦ୍ର ବାନାର୍ଜି କଲିକତାରେ ଏକ ଜାତୀୟ ଅନୁଷ୍ଠାନ ପ୍ରତିଷ୍ଠା କରିବାର ସଭା କରୁଥିବାରୁ ମଧୁବାବୁ ସେଠାକୁ ଯାଇଥିଲେ ଏବଂ ସେଥିପାଇଁ ସେହି ସମୟରେ ବମ୍ବେ ଯାଇ ପାରିନଥିଲେ । ତେବେ ୧୮୮୬ ମସିହାରୁ ୧୯୦୩ ମସିହା ଯାଏ, ସେ କଂଗ୍ରେସର ଜଣେ ଗଣ୍ୟମାନ୍ୟ ସକ୍ରିୟ ସଭ୍ୟ ଥିଲେ । କିନ୍ତୁ ସେ ସମୟର ବେଙ୍ଗଲ, ବିହାର, ମାଡ୍ରାସ ଓ ମଧ୍ୟପ୍ରଦେଶର ନେତା ମାନେ ମଧୁବାବୁଙ୍କ ଭାଷା ଭିତ୍ତିରେ ଓଡିଶା ପ୍ରଦେଶ ଗଠନ ପ୍ରସ୍ତାବକୁ ନାନା ଆଳ ଦେଖାଇ ପୂର୍ଣ୍ଣ ବିରୋଧ କଲେ; ମୁଖ୍ୟ ଉଦ୍ଦେଶ୍ୟ ଥିଲା, ସେ ପ୍ରଦେଶମାନଙ୍କ ସହ ସାମିଲ ହୋଇଥିବା ଓଡିଶା ଭାଷାଭାଷୀ ଅଞ୍ଚଳ ପରିତ୍ୟାଗ ନକରିବାର ସ୍ୱାର୍ଥାନ୍ଧତା । ତେଣୁ ମଧୁବାବୁ ୧୯୦୩ ମସିହାରେ କଂଗ୍ରେସରୁ ଅଲଗା ହୋଇ "ଉତ୍କଳ ସମ୍ମିଳନୀ" ଗଠନ କରି ଓଡିଶା ଗଠନ ନିମନ୍ତେ ପ୍ରାଣପଣେ ଚେଷ୍ଟା କଲେ । ଯଦି  ମଧୁବାବୁ କଂଗ୍ରେସରୁ ଅଲଗା

ହୋଇନଥାନ୍ତେ, ତେବେ ଜଣେ "ଜାତୀୟ ନେତା" ଭାବେ ଗଣ୍ୟ ହୋଇଥାନ୍ତେ । କିନ୍ତୁ ଓଡିଶା ପ୍ରଦେଶ ଗଠନ ହୋଇ ପାରିନଥାନ୍ତା କି ଆଉ ପରେ ସେହି କଂଗ୍ରେସ ଲୋକେ ମନ୍ତ୍ରୀ ଗାଦିରେ ବସି ପାରିନଥାନ୍ତେ । ସେ କଂଗ୍ରେସ ଲୋକଙ୍କ ଦ୍ୱାରା ଜାତୀୟ ନେତା ଭାବେ ଗଣ୍ୟ ନହୋଇ ମଧ୍ୟ ବାସ୍ତବରେ ସେ ଜାତୀୟ ନେତା ଥିଲେ । ସେ ଜାତୀୟ ସ୍ତରର ବ୍ୟକ୍ତିତ୍ୱ ଥିବା ଦୃଷ୍ଟିରୁ ଭାଇସରୟ କାଉନସିଲ, ଆଜି ଯାହା ପାର୍ଲିଆମେଣ୍ଟ, ତାହାର ସଭ୍ୟ ହୋଇଥିଲେ । ଗୋଖଲେଙ୍କ ସଙ୍ଗେ ଏକ ସମୟରେ ସେ ବ୍ରିଟିଶ୍ ସରକାରଙ୍କ ଠାରୁ ସି.ଆଇ.ଇ. ଉପାଧି ପାଇଥିଲେ । ଦାଦାଭାଇ ନାରୋଜୀ ଏବଂ ସୁରେନ୍ଦ୍ର ନାଥ ବାନାର୍ଜିଙ୍କ ପରେ ସେ ହେଉଛନ୍ତି ଭାରତର ତୃତୀୟ ବ୍ୟକ୍ତି, ଯିଏ ବ୍ରିଟିସ୍ ପାର୍ଲାମେଣ୍ଟକୁ ଉଦ୍‌ବୋଧନ ଦେଇଥିଲେ ଏବଂ ତାହା ମୁଖ୍ୟତଃ ଓଡିଶାର ସ୍ୱାର୍ଥ ରକ୍ଷା ନିମନ୍ତେ ଉଦ୍ଦିଷ୍ଟ ଥିଲା । ମହାତ୍ମା ଗାନ୍ଧୀ ଗୋଖଲେଙ୍କୁ ତାଙ୍କର "ଗୁରୁ" ବୋଲି କହୁଥିଲେ ଏବଂ ମଧୁବାବୁଙ୍କୁ ତାଙ୍କ "ପଥ ପ୍ରଦର୍ଶକ" ବୋଲି କହୁଥିଲେ । ନେହେରୁ କହିଥିଲେ ମଧୁବାବୁ ଏକ ଜାତୀୟ ବୀର ଥିଲେ । ରାଜେନ୍ଦ୍ର ପ୍ରସାଦ, ଶ୍ରୀ ଆଶୁତୋଷ ମୁଖାର୍ଜୀ ପ୍ରଭୃତି ନେତୃବୃନ୍ଦ ତାଙ୍କୁ ନେତା ଭାବେ, ଗୁରୁ ଭାବେ ଗ୍ରହଣ କରିଥିଲେ । ଭାରତର ପ୍ରତ୍ୟେକ ଧାରାର ନେତୃସ୍ଥାନୀୟ ବ୍ୟକ୍ତିମାନେ ତାଙ୍କୁ ନେତାର ସମ୍ମାନ ଦେଉଥିଲେ । ଭାରତର ଖ୍ରୀଷ୍ଟିୟାନ୍ ଆସୋସିଏସନ୍‌ରେ ସେ ଦୁଇଥର ସଭାପତି ହୋଇଥିଲେ । ଗାନ୍ଧିଜୀଙ୍କ ବହୁ ପୂର୍ବରୁ ସେ ଓଡିଶାରେ ଚରଖା ବାଣ୍ଟି ତନ୍ତୀ ବୃନ୍ଦଙ୍କ ଉନ୍ନତି ନିମନ୍ତେ ଚେଷ୍ଟା କରିଥିଲେ । ଗାନ୍ଧିଜୀଙ୍କ ବହୁ ପୂର୍ବରୁ ସେ ଦେଶୀୟ ଶିଳ୍ପ ଅନୁଷ୍ଠାନ "ଉତ୍କଳ ଟାନେରୀ" ଆରମ୍ଭ କରିଥିଲେ । ଗାନ୍ଧିଜୀଙ୍କ ବହୁ ପୂର୍ବରୁ ସେ ଦଳିତ ମାନଙ୍କ ଉନ୍ନତି ନିମନ୍ତେ କାର୍ଯ୍ୟ ଆରମ୍ଭ କରିଥିଲେ । ଭାରତରେ ପ୍ରଥମେ ସେ "ସମବାୟ ସମିତି" ଗଠନ କରିଥିଲେ ।

ବିଶେଷତଃ ସ୍ତ୍ରୀ ଲୋକମାନଙ୍କୁ କୋର୍ଟ କଚେରିରେ ସାହାଯ୍ୟ କରିବା ନିମନ୍ତେ ଶୈଳବାଳାଙ୍କ ସାନ ଭଉଣୀ ସୁଧାଂଶୁବାଳାଙ୍କୁ ମଧୁବାବୁ ଲ' ପଢାଇଥିଲେ ଓକିଲ କରିବାକୁ । କିନ୍ତୁ "Legal Practitioners Act"ରେ ମହିଳାମାନେ ଓକିଲ ହେବାର ଆଇନ ନ ଥିବାରୁ ସୁଧାଂଶୁବାଳାଙ୍କ ଓକିଲ ଲାଇସେନ୍ସ ପାଇଁ ଦରଖାସ୍ତକୁ ନାକଚ କରି ଦିଆଗଲା । ମଧୁବାବୁ ସେଥିପାଇଁ

ମକଦ୍ଦମା କରି ପ୍ରିଭି କାଉନସିଲ ପର୍ଯ୍ୟନ୍ତ ଯାଇଥିଲେ । ପ୍ରିଭି କାଉନ୍‌ସିଲ୍‌ରେ କେସ୍ ଡିଗ୍ରୀ କରି ଭାରତ ସରକାରଙ୍କ ଦ୍ୱାରା ଆଇନ କରାଇଥିଲେ-ଭାରତରେ ମହିଳାମାନେ ଓକିଲ ହୋଇପାରିବେ । ସେଥିପାଇଁ ଆଜି ଭାରତରେ ମହିଳାମାନେ କେବଳ ଓକିଲ ହୋଇ ପାରୁନାହାନ୍ତି, ହାଇକୋର୍ଟ ଓ ସୁପ୍ରିମ କୋର୍ଟର ବିଚାରପତି ମଧ୍ୟ ହେଲେଣି ।

ମଧୁବାବୁ ହିଁ ବୋଧେ ପ୍ରଥମ ବ୍ୟକ୍ତି, ଆଜି ପର୍ଯ୍ୟନ୍ତ କେବଳ ଭାରତ ନୁହେଁ ପୃଥିବୀର,ଯିଏ ନୀତି ଦୃଷ୍ଟିରୁ ଲୋକ ସେବା କରିବା ନିମନ୍ତେ ମନ୍ତ୍ରୀ ହୋଇ ଦରମା ନ ନେବା ପାଇଁ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ସେ ପ୍ରଥମେ ଭାଷା ଭିତ୍ତିରେ ରାଜ୍ୟ ଗଠନ କରିଥିଲେ; କଂଗ୍ରେସବାଲା ପରେ ତାହା ଗ୍ରହଣ କରିଥିଲେ । ସେ ହିଁ ପ୍ରଥମେ ବିଚାର ବିଭାଗକୁ ପ୍ରଶାସନ ବିଭାଗରୁ ପୃଥକ କରିବାକୁ ଦାବି କରିଥିଲେ । ସେ ଗାନ୍ଧିଜୀଙ୍କ ପୂର୍ବରୁ ଲୁଣ ଉପରୁ ଟିକସ ଉଠାଇବାକୁ ଆନ୍ଦୋଳନ କରିଥିଲେ । ଏହିପରି ବହୁ କାର୍ଯ୍ୟ ସେ ସର୍ବଭାରତୀୟ ସ୍ତରରେ ଜଣେ ଅଗ୍ରଣୀ ବ୍ୟକ୍ତି ଭାବେ କରିଥିଲେ ଯାହାର ହିସାବ ଅସରନ୍ତି । ତେଣୁ ସୁରେନ୍ଦ୍ର ସାଏ ଓ ସୁଭାଷ ବୋଷଙ୍କର ଜାତୀୟ ସ୍ତରର ବ୍ୟକ୍ତିତ୍ୱ ଅପେକ୍ଷା ତାଙ୍କ ବ୍ୟକ୍ତିତ୍ୱ କିଛି କମ୍ ନଥିଲା ।

ଗାନ୍ଧୀଜୀ ଯେତେବେଳେ ମଧୁବାବୁଙ୍କ ସଙ୍ଗେ ତାଙ୍କ ଉତ୍କଳଟାନେରୀ ବୁଲି ଦେଖୁଥିଲେ ସେତେବେଳେ ସେ ପ୍ରତ୍ୟକ୍ଷ କଲେ, ମଧୁବାବୁ ମୋଚିମାନଙ୍କ କାନ୍ଧରେ ହାତ ପକାଇ ବନ୍ଧୁ ଭାବେ କିପରି ବ୍ୟବହାର କରୁଥିଲେ ଓ ତାଙ୍କ ସଙ୍ଗେ ଆଲୋଚନା କରୁଥିଲେ । ତାହାହିଁ ଗାନ୍ଧିଜୀଙ୍କୁ ପ୍ରେରଣା ଦେଇଥିଲା ଦେଶରେ ଅସ୍ପୃଶ୍ୟତା ପରାୟଣ କାର୍ଯ୍ୟ ହାତକୁ ନେବାକୁ । ଏହିପରି ଚରଖା ବାଣ୍ଟିବା, ଲୁଣ ମାରିବା, ଦେଶୀୟ ଶିଳ୍ପ ପ୍ରତିଷ୍ଠା କରିବା ପ୍ରଭୃତି ନାନା କର୍ଯ୍ୟକ୍ରମ ମଧୁବାବୁ ଗାନ୍ଧୀଜୀଙ୍କ ପୂର୍ବରୁ କାର୍ଯ୍ୟକାରୀ କରି ଏ ସବୁ ଦିଗରେ ତାଙ୍କର ପଥ ପ୍ରଦର୍ଶକ ଥିଲେ ।

ଜାତୀୟସ୍ତରରେ ନେତା ଭାବେ ମଧୁବାବୁଙ୍କ ବିଷୟ ଆଲୋଚିତ ହେଉଥିବା ସମୟରେ ମୁଁ ଅନ୍ୟ ଗୋଟିଏ ଘଟଣା ଉଲ୍ଲେଖ କରିବାକୁ ଚାହୁଁଛି । ୧୯୩୬ ମସିହାରେ ଭାଷା ଭିତ୍ତିରେ ମଧୁବାବୁଙ୍କ ଯୋଗୁଁ ଓଡିଶା ପ୍ରଦେଶ ଗଠିତ ହେଲା । ଏହାର ଦୁଇ ବର୍ଷ ପରେ ୧୯୩୮ ମସିହାରେ ମାଲାୟାଲମ୍ ଭାଷାଭାଷୀ କେରଳର ନେତାମାନେ, କନ୍ନଡ ଭାଷାଭାଷୀ କର୍ଣ୍ଣାଟକର

ନେତାମାନେ ଓ ତେଲଗୁ ଭାଷାଭାଷୀ ଆନ୍ଧ୍ର ଅଞ୍ଚଳର ନେତାମାନେ ମାଡ୍ରାସ ପ୍ରେସିଡେନସୀ ଅଧୀନରେ ନ ରହି ସେମାନଙ୍କର ସ୍ୱତନ୍ତ୍ର ରାଜ୍ୟ ଭାଷା ଭିତ୍ତିରେ ଦାବି କଲେ । ସେହି ନେତାମାନେ ଜାତୀୟ କଂଗ୍ରେସର ସର୍ବ ଭାରତୀୟ ସ୍ତରର ତୁଙ୍ଗ ଏବଂ ଖୁବ୍ ଟାଣୁଆ ନେତା ଥିଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ବ୍ରିଟିଶ ସରକାର ସେମାନଙ୍କର ଦାବି ପ୍ରତ୍ୟାଖାନ କଲେ । ଅଥଚ ମଧୁବାବୁଙ୍କ ଦାବି ଗ୍ରହଣ କରିଥିଲେ ।

ଏହି ଘଟଣାରୁ ଅନୁଭବ କରିହୁଏ ମଧୁବାବୁଙ୍କ ବ୍ୟକ୍ତିତ୍ୱ ଏବଂ ନେତୃତ୍ୱ କେତେ ଉଚ୍ଚକୋଟୀର ଏବଂ ବଜ୍ରସମ ସୁଦୃଢ ଥିଲା ଯାହା ବ୍ରିଟିଶ ଶାସକଙ୍କ ଦୁର୍ଭେଦ୍ୟ ହୃଦୟକୁ ଭେଦ କରିଥିଲା । ବରଂ ଏହା କହିବା ଅତ୍ୟୁକ୍ତି ହେବନାହିଁ ଯେ, ମଧୁବାବୁଙ୍କ ନେତୃତ୍ୱର ମୂଲ୍ୟ ଅନ୍ୟମାନଙ୍କ ଅପେକ୍ଷା ଉଚ୍ଚସ୍ତରର ଥିଲା ଓ ମହତ୍ତର ଥିଲା ।

ତେଣୁ ଓଡିଶାର ଯେଉଁ ନେତାମାନେ ମହାଭାରତୀୟ ଭାବଧାରାର କଥା କୁହନ୍ତି ଏବଂ ଯେଉଁମାନେ ଭାରତୀୟ ସ୍ତରରେ କୁଜି ନେତାର ସମ୍ମାନ ପାଆନ୍ତି ନାହିଁ, ସେମାନଙ୍କର ମଧୁବାବୁଙ୍କୁ ହତାଦାର କରିବା କେତେ ନିମ୍ନ ସ୍ତରର ଘୃଣ୍ୟ କାର୍ଯ୍ୟ ତାହା ପାଠକମାନେ ବିଚାର କରିବେ ।

ଦେଶପାଇଁ ବହୁ ନେତା, ବହୁ ଦେଶ ସେବକ ବହୁ ଭାବେ ଆତ୍ମ ବଳିଦାନ ଦେଇଛନ୍ତି । ଧରାଯାଉ, ସୁଭାଷ ବୋଷଙ୍କ କଥା, ସ୍କୁଲରେ ପଢିବା ସମୟରୁ ତାଙ୍କ ମନରେ ଦେଶ ସେବାର ଭାବନା ଉଦ୍ରେକ ହୋଇଥିଲା । ବାପାଙ୍କ ଇଚ୍ଛାରେ ସେ ବିଲାତ ଯାଇ ଆଇ.ସି.ଏସ୍. ଚାକିରି ପାଇଁ ଅନୁଷ୍ଠିତ ପରୀକ୍ଷାରେ ସଫଳକାମ ହେଲେ । କିନ୍ତୁ ପର ମୁହୂର୍ତ୍ତରେ ଆଇ.ସି.ଏସ. ଚାକିରି କୁ ତ୍ୟାଗ କରି ସେ ଫେରିଲେ ଭାରତକୁ ଦେଶ ସେବା କରିବାକୁ । ତାଙ୍କର ଆଦର୍ଶ ଏବଂ ନୀତି ସେ ସମୟର ଜାତୀୟ କଂଗ୍ରେସ ଦଳର ନୀତି ସଙ୍ଗେ ମେଳ ନ ଖାଇବାରୁ ସେ କଂଗ୍ରେସ ଦଳ ତ୍ୟାଗ କଲେ । ସେ ସମୟକୁ ଭାରତର ପରିବେଶ ବଦଳି ଯାଇଥିଲା । ତାଙ୍କ ନୀତି ଏବଂ ଆଦର୍ଶକୁ ଭାରତର ବହୁଲୋକ ଅନୁମୋଦନ କରି ସୁଭାଷଙ୍କ ସହ ସହଯୋଗ କରିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟକୁ ଅନ୍ତର୍ଜାତୀୟ ପରିବେଶ ବଦଳି ପାଇଥିଲା । ସେହି ପରିସ୍ଥିତିରେ ସେ ଦେଶ ବାହାରକୁ ଲମ୍ଫ ପ୍ରଦାନ କରିଥିଲେ । ତା ପରେ

ବିରାଟ ଆଇ.ଏନ୍.ଏ. ସୈନ୍ୟବାହିନୀ ସୁଭାଷଙ୍କ ପଛରେ ଠିଆ ହୋଇଥିଲା । କିନ୍ତୁ ଭଗବାନଙ୍କର ବିଚାର ଅନ୍ୟପ୍ରକାର ଥିଲା । ଶେଷକୁ ସୁଭାଷଙ୍କୁ ଆଶ୍ଚର୍ଯ୍ୟ ଜନକ ଭାବେ ନିଖୋଜ ହେବାକୁ ପଡିଥିଲା । କିଏ କହିଲା ଉଡାଜାହାଜର ଦୁର୍ଘଟଣାରେ ପ୍ରାଣତ୍ୟାଗ କଲେ । କିଏ କହିଲା ସେ ବଞ୍ଚି ରହିଲେ ଭିନ୍ନ ପ୍ରକାରେ । ତେବେ ଦେଶପାଇଁ ତାଙ୍କର ଏହା ନିଶ୍ଚୟ ଆତ୍ମ ବଳିଦାନ ।

ଶ୍ରୀ ସତ୍ୟନାରାୟଣ ମହାପାତ୍ରଙ୍କ ଲିଖିତ "ସଂଗ୍ରାମୀ ଶ୍ରୀ ସୁରେନ୍ଦ୍ର ସାଏ" ପୁସ୍ତକର ପୃ ୨ ଷ୍ଠାରେ ନିମ୍ନମତେ ପ୍ରକାଶିତ :-

XXX"ସିପାହୀ ବିଦ୍ରୋହ ଆରମ୍ଭ ହେବାର ପ୍ରାୟ ୩୦ ବର୍ଷ ପୂର୍ବରୁ ସଂଗ୍ରାମୀ ସୁରେନ୍ଦ୍ର ସାଏ ଇଂରେଜମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ସଂଗ୍ରାମ କରିଥିଲେ ସେମାନଙ୍କର ଯଥେଚ୍ଛାଚାର ବିରୁଦ୍ଧରେ, ମନମୁଖୀ ଶାସନ ବିରୁଦ୍ଧରେ । ସେ ଚାହିଁଥିଲେ ସମ୍ବଲପୁର ଅଞ୍ଚଳରୁ ସେମାନଙ୍କୁ ବହିଷ୍କାର କରିବାପାଇଁ - ସେଠାରେ ଦେଶୀୟ ଶାସନର ପ୍ରତିଷ୍ଠା ପାଇଁ, କାରଣ ଆଞ୍ଚଳିକ ଇଂରେଜ ଶାସକମାନେ ସୁରେନ୍ଦ୍ର ସାଏଙ୍କ ନ୍ୟାଯ୍ୟଦାବି- ସମ୍ବଲପୁର ସିଂହାସନକୁ ଉପେକ୍ଷା କରିଥିଲେ । ପୁଣି ସେମାନଙ୍କର କ୍ରୀଡାପୁତ୍ତଳିକା ହୋଇ ପାରିବାଭଳି ଲୋକଙ୍କୁ ସେହି ରାଜଗାଦିରେ ବସାଇଥିଲେ । ସାଧାରଣ ଲୋକାଚାରକୁ ଧୂଳିସାତ୍ କରି ବିଧବା ରାଣୀଙ୍କୁ ସେହି ରାଜ୍ୟର ଶାସନ ଅଧିକାର ଦେଇଥିଲେ । ସେଭଳି ସ୍ୱଛେଚାର ସହ୍ୟ କରିପାରିନଥିଲେ ବୀର ସୁରେନ୍ଦ୍ର ସାଏ, ସେ ଦାବି କରିଥିଲେ ସମ୍ବଲପୁର ସିଂହାସନ ।

"ଦେଶର ଜନ ସାଧାରଣ ତାହାଙ୍କ ଦାବିକୁ ବିପୁଳ ସମର୍ଥନ ଜଣାଇଥିଲେ । କିନ୍ତୁ ଇଂରେଜ ସରକାର ତାହାଙ୍କର ସେହି ଦାବିକୁ କୌଣସି ମତେ ସ୍ୱୀକାର କରି ନଥିଲେ । ବିଧବା ରାଣୀଙ୍କ ଦୁର୍ବଳ ଶାସନ, ଇଂରେଜ ପ୍ରଶାସକଙ୍କ ଇଙ୍ଗିତରେ ଘନ ଘନ ସେଟଲମେଣ୍ଟ ଦ୍ୱାରା ଥରକୁ ଥର ଖଜଣାର ବୃଦ୍ଧି, ନାନା ପ୍ରକାର ଅତ୍ୟାଚାର ଜନକ ଲୋକ ବିରୋଧୀ ଶାସନ ଯୋଗୁଁ ସାଧାରଣ ଲୋକ ଏବଂ ଜମିଦାରମାନେ ସୁରେନ୍ଦ୍ର ସାଏଙ୍କର ସମ୍ବଲପୁର ରାଜସିଂହାସନ ଉପରେ ନାଯ୍ୟଦାବୀ ପ୍ରତି ବିପୁଳ ସମର୍ଥନ କରିଥିଲେ ।"

ମଧୁବାବୁ କଟକ କଲିଜିଏଟ ସ୍କୁଲରେ ମାଟ୍ରିକ ପଢୁଥିଲେ । ସେତେବେଳେ ହାତଗଣତି କେତେଜଣ ଓଡିଆଛାତ୍ର ହାଇସ୍କୁଲରେ ପଢୁଥିଲେ ।

ବାକି ପ୍ରାୟ ସମସ୍ତ ଛାତ୍ର ବଙ୍ଗାଳୀ ଥିଲେ । ମଧୁବାବୁ ମେଧାବୀ ଥିଲେ । କିନ୍ତୁ ତାଙ୍କର ବେଶଭୂଷା ଏବଂ ଢଙ୍ଗଢାଙ୍ଗ ପାଇଁ ବଙ୍ଗାଳୀ ଛାତ୍ରଙ୍କର ଉପହାସର ପାତ୍ର ହେଉଥିଲେ । ସେହି ଦିନୁ ତାଙ୍କ ମନରେ ଜାଗ୍ରତ ହୋଇଥିଲା-ସେ ଉପହାସର ଯଥାର୍ଥ ଉତ୍ତର ଦେବେ । ଗଙ୍ଗା ଠାରୁ ଗୋଦାବରୀ ଯାଏ ବିସ୍ତୃତ ବୀର ଓଡିଆର ସାମ୍ରାଜ୍ୟକୁ ଉଦ୍ଧାର କରିବେ ଏବଂ ବୀରତ୍ୱର ପ୍ରତିଦାନରେ ଭିନ୍ନ ଭିନ୍ନ ପ୍ରଦେଶରେ ବିଚ୍ଛିନ୍ନ ହୋଇ ଅର୍ଦ୍ଧମୃତ ଅବସ୍ଥାରେ ପଡିରହିଥିବା ଓଡିଆଜାତିକୁ ଏକତ୍ରିତ କରି ଏକ ନୂତନ ଓଡିଆ ଜାତିର ଅଭ୍ୟୁଦୟ କରାଇବେ । ସେଥିପାଇଁ ସେ ଚାହିଁଥିଲେ ବେଶୀ ପାଠ ପଢିବାକୁ । କିନ୍ତୁ ବାପା ତାଙ୍କର ଏତେ ଟଙ୍କା ଦେଇ କଲିକତାରେ ପାଠ ପଢାଇବାକୁ ସକ୍ଷମ ନ ଥିଲେ ।

ସେଥିପାଇଁ ମଧୁବାବୁ ଏକା ଏକା ଚାଲିଲେ କଲିକତା ଅଭିମୁଖେ । ବାଟରେ ବାଲେଶ୍ୱରରେ କିଛି ଦିନ ଚାକିରି କରି କିଛି ଟଙ୍କା ସଞ୍ଚୟ କରିବା ପରେ କଲିକତା ଗଲେ । ନିଜ ଗୋଡରେ ନିଜେ ଠିଆ ହୋଇ ଆଇ.ଏ., ବି.ଏ., ଏମ୍.ଏ. ଓ ଲ’ ପାଠ ପଢି ଓକିଲ ହୋଇ କଟକ ଆସିଲେ ନିଜର ସ୍ୱପ୍ନକୁ ସାକାର କରିବାକୁ ।

କିନ୍ତୁ ତାଙ୍କ ପଛରେ ଛିଡା ହୋଇ ସାହାଯ୍ୟ କରିବାକୁ କେହି ନ ଥିଲେ । ବରଂ ତାଙ୍କୁ ବିରୋଧ କରିବାକୁ ଏବଂ ପଛରୁ ଗୋଡ ଟାଣିବାକୁ ନିଜ ଜାତି ଭାଇଙ୍କ ମଧ୍ୟରୁ ନେତା ବୋଲାଉଥିବା ଲୋକେ ଆଗଭର ହୋଇଥିଲେ ।

ମଧୁବାବୁ ମହାଭାରତୀୟ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଜାତୀୟ ସ୍ତରର ନେତୃବୃନ୍ଦଙ୍କ ସହ ଭାରତର ସ୍ୱାଧୀନତା ପ୍ରାପ୍ତି ଏବଂ ଉନ୍ନତି ନିମନ୍ତେ କାର୍ଯ୍ୟ କରିଥିଲେ । ତା ସଙ୍ଗେ ସଙ୍ଗେ ନିଜ ଜାତି ଏବଂ ଜାତିର ମାତୃଭୂମି କଥା ଭୁଲି ନଯାଇ ତାକୁ ସଂଗଠିତ କରିବାକୁ ଚାହିଁ ଥିଲେ । କିନ୍ତୁ ଜାତୀୟ ସ୍ତରର ନେତାମାନେ ନିଜ ଭାଷାଭାଷୀ ଜାତିଭାଇ ଏବଂ ମାତୃଭୂମି କଥା ମନରେ ଲୁଚାଇ ରଖି ମଧୁବାବୁଙ୍କ ସେ ଭାବନାକୁ ବିରୋଧ କରିଥିଲେ ସେମାନଙ୍କର ନିଜର ସ୍ୱାର୍ଥପାଇଁ; ଭାରତୀୟ ଭାବଧାରା କଥା ମୁହଁରେ କହି । ସେଥିପାଇଁ ମଧୁବାବୁ ସେ ପ୍ରକାର ଜାତୀୟ ନେତାଙ୍କ ଠାରୁ ଦୂରେଇ ଗଲେ ।

ନିଜ ଜାତି ଓ ମାତୃଭୂମି କଥା ଆଗ ବିଚାର କରିବା କଥା ଏବଂ ତା ସଙ୍ଗେ ସଙ୍ଗେ ଦେଶ କଥା ଭାବିବାକୁ ଠିକ୍ କଲେ । ମଧୁବାବୁ ନିଜର

ବିଚାରରେ, ନିଜର ଧୀଶକ୍ତି ବଳରେ ଅର୍ଦ୍ଧମୃତ, ନିଷ୍ପେଷିତ ଜାତିର ପ୍ରାଣରେ ନୂତନ ଜୀବନ ଶକ୍ତି ସଞ୍ଚାର କରି ତାକୁ ଉଜ୍ଜୀବିତ କଲେ । ନିଜ ରୋଜଗାରରୁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ ଜାତିର ଅର୍ଥନୈତିକ ଉନ୍ନତି ନିମନ୍ତେ ଏବଂ ସେଥିପାଇଁ ମଧ୍ୟ ନିଃସ୍ୱ ହୋଇ ଶେଷ ଜୀବନର ପରିଣତ ବୟସରେ ନିଜକୁ "ଦେବାଳିଆ" ଘୋଷଣା କରିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ସେଥିପାଇଁ ତାଙ୍କ ମନରେ ଅବଶୋଷ କି ଦୁଃଖ ନ ଥିଲା, ଯଦିଓ ଅଶେଷ ବ୍ୟଥା ଥିଲା । ଜୀବନ ଯାକ ଏକକ ସଂଗ୍ରାମୀ ଭାବେ ସେ ସଂଗ୍ରାମ କରିଥିଲେ ନିଜ ଜାତି ପାଇଁ, ଏକ ମାତୃଭୂମି ସଂଗଠିତ କରିବା ପାଇଁ । ଶେଷକୁ ୮୩ ବର୍ଷ ବୟସରେ ଶାରୀରିକ ଅସୁସ୍ଥତା ଯୋଗୁଁ ଶଯ୍ୟାଶାୟୀ ଅବସ୍ଥାରେ ମଧ୍ୟ ଓଡନେଲ କମିଟିର ସଭ୍ୟ ହୋଇ ନିଜ ଜାତିପାଇଁ ଏକ ମାତୃଭୂମି "ଓଡିଶା ପ୍ରଦେଶ" ଗଠନ କରିଥିଲେ । କିନ୍ତୁ ତାହା ସ୍ୱଚକ୍ଷୁରେ ଦେଖିବାକୁ ରହିପାରିଲେ ନାହିଁ । ମଧୁବାବୁ ୧୯୩୪ ମସିହାରେ ଦେହ ତ୍ୟାଗ କଲେ । ଓଡିଶା ପ୍ରଦେଶ ସାକାର ପରିଗ୍ରହ କଲା ୧୯୩୬ ମସିହାରେ ।

ଏହି ପରି ଭାବେ ମଧୁବାବୁ ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ତିଳ ତିଳ କରି ଆତ୍ମାହୁତି ଦେଇ ଦେଶପାଇଁ, ନିଜ ଜାତି ପାଇଁ ଆତ୍ମବଳିଦାନ ଦେଇଥିଲେ । ଏହି ପ୍ରକାର ନିଃସଙ୍ଗ ଏକକ ସଂଗ୍ରାମୀ ଭାବେ ସଫଳ କାମ ହେବା ମଧୁବାବୁଙ୍କ ଆତ୍ମବଳିଦାନର ବିଶେଷତ୍ୱ ।

ଉତ୍କଳ ଜନନୀଙ୍କ କୋଳରେ ଜନ୍ମ ନେଇଥିଲେ ଯେଉଁ ତିନି ମହାମାନବଙ୍କ କଥା ଉଲ୍ଲେଖ କଲି, ସେମାନଙ୍କର ଆତ୍ମବଳିଦାନର ଯେ ବାସ୍ତବ ମୂଲ୍ୟାୟନ ଜାତୀୟ ସ୍ତରରେ ଓ ରାଜ୍ୟ ସ୍ତରରେ ହୋଇଛି ସେ କଥା ମନରେ ବିଚାର କଲା ସମୟରେ ହତୋତ୍ସାହ ହେବାକୁ ପଡେ । ମଧୁବାବୁଙ୍କୁ ରାଜ୍ୟ ସ୍ତରରେ ଜାଣିଶୁଣି ବିଲୁପ୍ତ କରିବାର ଅପଚେଷ୍ଟା ପରିପ୍ରେକ୍ଷୀରେ ତାଙ୍କର ମୂଲ୍ୟାୟନ ବିଷୟରେ ଭାବିବା ବିଡମ୍ବନା ମାତ୍ର । ତେଣୁ ମଧୁବାବୁ ଜାତୀୟ ସ୍ତରର ରାଜନୈତିକ ଓ ଅର୍ଥନୈତିକ ଭାବ ଧାରାଜ ଯେଉଁ ଉଚ୍ଚ ସ୍ତରର ଚିନ୍ତା ପ୍ରଦାନ କରିଥିଲେ, ତାହା ଉପରେ ଜାତୀୟ ସ୍ତରରେ ଚିନ୍ତନର ପ୍ରୟାସ ସଂପର୍କରେ ପ୍ରଶ୍ନ ଉଠିବା କଷ୍ଟକର ।

ଭାରତର ଅନ୍ୟ ସମସ୍ତ ଅଂଶ ଆଗ କରାୟତ କଲା ପରେ ବ୍ରିଟିଶ

ସୈନ୍ୟ ଓଡିଶାକୁ କଳେ ବଳେ କୌଶଳେ ନିଜ ଅଧୀନକୁ ନେଇଥିଲେ ୧୮୦୩ ମସିହାରେ । ତାହା ପରେ ଓଡିଶାର ଉପକୂଳବର୍ତ୍ତୀ ପୂର୍ବାଞ୍ଚଳରେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ପ୍ରଥମ ବିଦ୍ରୋହ ଏବଂ ସଂଗ୍ରାମ ଆରମ୍ଭ କରିଥିଲେ ଓଡିଆ ବୀର ପାଇକମାନେ, ଯାହାକୁ ପାଇକ ବିଦ୍ରୋହ ବା କୃଷକ ବିଦ୍ରୋହ ବୋଲି କୁହାଯାଏ । କିନ୍ତୁ ଜାତୀୟ ସ୍ତରର ଇତିହାସରେ ଏହାର ସ୍ଥାନ ନାହିଁ । ସେହିପରି ୧୮୫୭ର ସିପାହୀ ବିଦ୍ରୋହର ପ୍ରାୟ ୩୦ ବର୍ଷ ପୂର୍ବରୁ ୧୮୨୭ ମସିହାରୁ ଓଡିଶାର ବୀର ସୁରେନ୍ଦ୍ର ସାଏ ବିଦ୍ରୋହ ଆରମ୍ଭ କରିଥିଲେ ବ୍ରିଟିଶ ସରକାରଙ୍କ ବିପକ୍ଷରେ ଏବଂ ତାହା ଦୀର୍ଘ କାଳ ଧରି ଚଳାଇ ରଖିଥିଲେ । ୧୮୪୦ ମସିହାରେ ଜଣେ ବିଶ୍ୱାସ ଘାତକ ସହଚରର ଗୁପ୍ତ ସମ୍ବାଦରେ ସୁରେନ୍ଦ୍ର ସାଏ ଘୋର ଜଙ୍ଗଲର ଗୁମ୍ଫା ମଧ୍ୟରେ ବିଶ୍ରାମ ନେଉଥିଲା ବେଳେ ବ୍ରିଟିଶ ସୈନ୍ୟ ବାହିନୀର ଆକ୍ରମଣରେ ଭୀଷଣ ସଂଗ୍ରାମ ପରେ ବନ୍ଦୀ ହୋଇଥିଲେ । ହଜାରିବାଗ ଜେଲରେ ଥିବା ସମୟରେ ୧୮୫୭ ସିପାହୀ ବିଦ୍ରୋହ ସମୟରେ ବିଦ୍ରୋହୀମାନେ ଜେଲ ଫାଟକ ଭାଙ୍ଗି ସବୁ ବନ୍ଦୀଙ୍କୁ ମୁକ୍ତ କରିଦେଇଥିଲେ । ସୁରେନ୍ଦ୍ର ସାଏ ମୁକ୍ତ ହୋଇ ଆସି ବିରାଟ ସୈନ୍ୟ ବାହିନୀ ଧରି ସମ୍ବଲପୁର ସିଂହାସନ ଦଖଲ କଲେ । ବ୍ରିଟିଶଙ୍କ ବିରୁଦ୍ଧରେ ସଂଗ୍ରାମ ଚଳାଇ ରଖି ତାଙ୍କ ଶାସନକୁ ଧୂଳିସାତ୍ କଲେ । ୧୮୬୧ ମସିହାରେ ଚାଲାଖି କରି ବ୍ରିଟିଶରମାନେ ଘୋଷଣା କଲେ ବିଦ୍ରୋହୀମାନେ ଆତ୍ମ ସମର୍ପଣ କଲେ ତାଙ୍କୁ କ୍ଷମା କରାଯିବ । ଏହି ଚଞ୍ଚକତା ପୂର୍ଣ୍ଣ ଘୋଷଣାରେ କବଳିତ ହୋଇ ତାଙ୍କର ସହଯୋଗୀ ନେତାମାନେ ଆତ୍ମ ସମର୍ପଣ କଲାପରେ ସୁରେନ୍ଦ୍ର ସାଏ ୧୮୬୨ରେ ଆତ୍ମ ସମର୍ପଣ କଲେ । କିନ୍ତୁ ଅବିଶ୍ୱାସୀ ବ୍ରିଟିଶ ଶାସକ ୧୮୬୪ ମସିହାରେ ଏକ ମିଥ୍ୟା ହତ୍ୟା କମଦମାରେ ଜଡିତ କରାଇ ତାଙ୍କୁ ଆଜୀବନ ଜେଲ ଦେଇ ୧୮୭୪ ମସିହାରେ ଗୁପ୍ତରେ ଫାସି ଦେଇଦେଲେ । ଦୁଃଖର କଥା, ସୁରେନ୍ଦ୍ରଙ୍କର ଦୀର୍ଘଦିନର ଏ ବିସ୍ମୟକର ସଂଗ୍ରାମ ଜାତୀୟ ଇତିହାସରେ ଉଚ୍ଚମାନର ସ୍ଥାନ ପାଏ ନାହିଁ ।

ସେହିପରି ସୁଭାଷ ବୋଷଙ୍କ କଥା । ଯଦିଓ ସୁଭାଷ ବୋଷ ଉତ୍କଳ ଜନନୀଙ୍କ କୋଳରେ ଜନ୍ମ, ଉତ୍କଳର ପାଣି ପବନରେ ଲାଳିତ ପାଳିତ ଏବଂ ଏହିଠାରେ ହିଁ ଉଦ୍ରେକ ହୁଏ ତାଙ୍କ ପ୍ରାଣରେ ଦେଶମାତୃକା ପ୍ରତି ଭବିଷ୍ୟତରେ

ସେବା କରିବାର ଆଗ୍ନେୟଗିରି ସଦୃଶ ଅଭୀପ୍ସା, ତଥାପି ତାଙ୍କୁ ଉକ୍ତଳୀୟ ଭାବେ ପରିଚିତ କରାଯାଉ ନାହିଁ । ସେ ଯାହା ହେଉ, ଦେଶପାଇଁ ତାଙ୍କ ଆତ୍ମବଳିଦାନର ପ୍ରକୃତ ମୂଲ୍ୟାୟନ ଆଜି ପର୍ଯ୍ୟନ୍ତ କରାଯାଉ ନାହିଁ ଇଚ୍ଛାକୃତ ଭାବେ, ତାହା ହୁଏତ କାହାକୁ ଅଛପା ନାହିଁ । ତେବେ ଭାରତର ସ୍ୱାଧୀନତା ପାଇଁ ସୁଭାଷ ବୋଷଙ୍କର ଏବଂ ତାଙ୍କ ସଂଗଠିତ ଆଇ.ଏନ୍.ଏର. ତ୍ୟାଗ କେତେ, ତାହା ଦୁଇଟି ଘଟଣାରୁ ପାଠକେ ବିଚାର କରିପାରିବେ । ସେଥିପାଇଁ ତାହା ଉଲ୍ଲେଖ କରିବାକୁ ଇଚ୍ଛା କରୁଛି ।

ନେତାଜୀ ସୁଭାଷ ବୋଷଙ୍କର ଦୃଢ ବ୍ୟକ୍ତିତ୍ୱ ତଥା ନେତୃତ୍ୱ ଅଧୀନରେ ଆଜାଦ୍ ହିନ୍ଦ୍ ଫୌଜର "ଦିଲ୍ଲୀ ଚଲୋ ଆହ୍ୱାନ" ଭାରତୀୟ ନୌବାହିନୀରେ ବିଦ୍ରୋହର ନିଆଁ ଜଳାଇଦେଲା । ସେ ସମୟକୁ ଭାରତକୁ ସ୍ୱାଧୀନତା ଦେବାର ଚରମ ବିରୋଧୀ ମିଃ ଚର୍ଚ୍ଚ ପ୍ରଧାନମନ୍ତ୍ରୀ ପଦରୁ ଗଲେଣି । ପ୍ରଧାନମନ୍ତ୍ରୀ ଥାନ୍ତି ମିଃ କ୍ଲିମେଣ୍ଟ ଆଟଲୀ । ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ପରେ ବ୍ରିଟିଶ ମିଲିଟାରୀ ଇନଟେଲିଜେନ୍ସ୍ ସର୍ଭିସ ସେତେବେଳେ ଭାରତର ସେନାବାହିନୀର କମାଣ୍ଡର ମିଃ ଅଚିନଲେକ୍‌ଙ୍କ ମତ ସହ ରିପୋର୍ଟ କଲେ ଯେ ଭାରତୀୟ ନୌବାହିନୀରେ ଘଟିଥିବା ବିଦ୍ରୋହ ସମଗ୍ର ଭାରତୀୟ ସେନାବାହିନୀର ବ୍ରିଟିଶ ଶାସନ ପ୍ରତି ଆନୁଗତ୍ୟକୁ ଦୋହଲାଇ ଦେଇଛି ଏବଂ ସେ ସେନାବାହିନୀ ଉପରେ ପୂର୍ବର ନିର୍ଭରତା ଓ ବିଶ୍ୱାସ ରଖିବା ଆଉ ସମ୍ଭବ ନୁହେଁ । ଏହି ରିପୋର୍ଟ ପାଇଲା ପରେ ପ୍ରଧାନମନ୍ତ୍ରୀ ମି. ଆଟଲୀ ପୂର୍ବର ପ୍ରଧାନମନ୍ତ୍ରୀ ମି. ଚର୍ଚ୍ଚିଲଙ୍କ ନିକଟକୁ ଯାଇ କହିଲେ, "The information of the Indian National Army by Suibhas Chandra Bose and the revolt of the Royal Indian Navy had amply demonstrated that the edifice of the loyalty of the Army and the Navy to the British had already crumbled and it was, therefore, prudent for Britishers to withdraw from India with grace" ଅରଗାନାଇଜର (Organiser) ପତ୍ରିକାର ନେତାଜୀ ଜନ୍ମ ଶତବାର୍ଷିକୀର ବିଶେଷ ସଂଖ୍ୟା ୨୬ ଜାନୁୟାରୀ, ୧୯୯୭ରେ ଶ୍ରୀ ଶାହିଲ ବ୍ରେଲଭି (Sahil Brelvy)ଙ୍କ ଦ୍ୱାରା ଲିଖିତ "Revolt in Royal Indian Navy that unnerved the British" ଶିରୋନାମାରେ ପ୍ରକାଶିତ ପ୍ରବନ୍ଧ ପୃ ୨୩ରେ ଦ୍ରଷ୍ଟବ୍ୟ ।

ନେତାଜୀ ସୁଭାଷ ବୋଷଙ୍କର ବଳିଷ୍ଠ ନେତୃତ୍ୱ ଏବଂ ତାଙ୍କ ଦ୍ୱାରା ସଂଗଠିତ ଆଜାଦ୍‌ହିନ୍ଦ୍ ଫୌଜ ଭାରତରେ ଯେଉଁ ବିସ୍ଫୋରକ ଅବସ୍ଥା ସୃଷ୍ଟି କରିଥିଲା, ତାହା ଯେ ବ୍ରିଟିଶ ଶାସକଙ୍କୁ ଭାରତକୁ ସ୍ୱାଧୀନତା ହସ୍ତାନ୍ତର କରିବାକୁ ବାଧ୍ୟ କରିଥିଲା ଏହା ମି କ୍ଲିମେଣ୍ଟ ଆଟଲୀଙ୍କ ପରି ବ୍ୟକ୍ତି ଅକୃତିମ ଭାବରେ କିପରି ଅନ୍ୟ ସମୟରେ ଘଟଣା ପ୍ରସଙ୍ଗରେ ପ୍ରକାଶ କରିଥିଲେ ସେହି ଘଟଣାଟି ଏଠାରେ ଉଲ୍ଲେଖ କରୁଛି ।

୧୯୫୬ ମସିହାରେ ଲର୍ଡ ଅଟଲି ଭାରତ ଆସିବା ସମୟରେ କଲିକତାରେ ରାଜ ଭବନରେ ଦୁଇ ଦିନ ପାଇଁ ଅବସ୍ଥାନ କରିଥିଲେ । ସେ ସମୟରେ କଲିକତା ହାଇକୋର୍ଟର ପ୍ରଧାନ ବିଚାରପତି ଶ୍ରୀ ପି. ଭି. ଚକ୍ରବର୍ତ୍ତୀ ପଶ୍ଚିମବଙ୍ଗର ରାଜ୍ୟପାଳ ଥିଲେ । ସେ ତାଙ୍କର ୩୦.୩.୭୬ ମସିହାର ଗୋଟିଏ ଚିଠିରେ ନିମ୍ନ ଲିଖିତ ଭାବେ ଲେଖିଥିଲେ :-

"When I was acting as Governor of West Bengal (in 1956) Lord Attlee Visited India and Stayed in Raj Bhaban, Calcutta, for two days. I put it straight to him like this.

"The quit India movement of Gandhi Practically died out long before 1947 and there was nothing in the Indian situation at that time which made it necessary for the British to leave India in a hurry. Why then they did so ? "

"In reply Attlee cited several reasons, the most important of which were the activities of Netaji Subhas Chandra Bose which weakened the very foundation of the British Empire in India. When asked about the extent to which the British decision to quit India was influenced by Gandhi's activities, Attee's lips widened in smile of disdain and he uttered, slowly, putting emphasis on each simple letter mi-ni-mal. (He said) without the Netaji-I.N.A. Phenomenon, India's freedom might have been delayed, awaiting similar phenomenon under a similar bold leadership."

ପ୍ରଧାନମନ୍ତ୍ରୀ ଲର୍ଡ ଅଟଲୀ ଯିଏ ଭାରତକୁ ସ୍ୱାଧିନତା ଦେଇଥିଲେ ତାଙ୍କର ଏହି ଉକ୍ତିରୁ ଏହା ସ୍ପଷ୍ଟ ଯେ ଭାରତର ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ନେତାଜୀ ସୁଭାଷ ବୋଷ ଏବଂ ତାଙ୍କ ଆଜାଦ୍‌ହିନ୍ଦ୍ ଫୌଜି ହିଁ ମୁଖ୍ୟତଃ ଦାୟୀ । (ଅରଗାନାଇଜର (Organiser) ପତ୍ରିକାର ନେତାଜୀ ଜନ୍ମ ଶତବାର୍ଷିକୀର ବିଶେଷ ସଂଖ୍ୟା ୨୬ ଜାନୁୟାରୀ, ୧୯୯୭ରେ ଶ୍ରୀ ପି. ଆଇ. ସାମନ୍ତଙ୍କ ଦ୍ୱାରା ଲିଖିତ "Netaji Patriot and Statesman" ଶିରୋନାମାରେ ପ୍ରକାଶିତ ପ୍ରବନ୍ଧ ପୃ୨୫ରେ ଦ୍ରଷ୍ଟବ୍ୟ ।)

ନେତାଜୀଙ୍କ ବିଷୟରେ ଏସବୁ ଏଠାରେ ଲେଖିବାର ଉଦ୍ଦେଶ୍ୟ ହେଉଛି, ଭାରତର ସ୍ୱାଧୀନତା ପାଇଁ ସଂଗ୍ରାମୀ ନେତାଜୀ ହିଁ ମୁଖ୍ୟତଃ ଦାୟୀ । କିନ୍ତୁ ବିଧିର ବିଧାନରେ ତାଙ୍କୁ ଅବଲୁପ୍ତ କରିବାର ଚେଷ୍ଟା । ସେହିପରି ଓଡିଶା ପ୍ରଦେଶ ଗଠନକାରୀ ମଧୁବାବୁଙ୍କୁ ବିସ୍ମୃତିର ଗର୍ଭକୁ ନିକ୍ଷେପ କରିବାର ଦୁର୍ବାର ଚେଷ୍ଟାର ଚକ୍ରବ୍ୟୂହ ।

ଏହାହିଁ ଆଜି ଜାତୀୟ ଚରିତ୍ର ଏବଂ ପ୍ରାଦେଶିକ ଚରିତ୍ରକୁ ବିକ୍ଷିପ୍ତ ଏବଂ ବିନଷ୍ଟ କରୁଛି ।

ଏହିଠାରେ ପ୍ରଶ୍ନ ଉଠେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରୁଥିବା ମଧୁବାବୁ ଋଣଗ୍ରସ୍ତ କାହିଁକି ହେଲେ । ମଧୁବାବୁ ଏକ ନୂତନ ଓଡିଶା ଜାତିର ଅଭ୍ୟୁଦୟ ଘଟାଇବା ସଂଗେ ସଂଗେ ତାର ଆର୍ଥିକ ଉନ୍ନତି ପ୍ରଥମେ ଘଟାଇବାକୁ ଚାହିଁଥିଲେ । ସେଥିପାଇଁ ସେ ନାନାବିଧ କର୍ମାନୁଷ୍ଠାନମାନ ନିଜେ ପଇସା ଦେଇ ଗଠନ କରିଥିଲେ । କେତେକ କୁଶଳ କାରିଗର କର୍ମନିଯୁକ୍ତି ପାଇପାରିଥିଲେ । କିନ୍ତୁ ଓଡିଶାର ସାଧାରଣ ଲୋକେ ମୁଖ୍ୟତଃ ଚାଷ କାମ ଉପରେ ନିର୍ଭର କରିଥାନ୍ତି । କେବଳ ଚାଷ ଉପରେ ନିର୍ଭର କଲେ ସବୁ ଲୋକଙ୍କର ଆର୍ଥିକ ଉନ୍ନତି ଘଟିବ ନାହିଁ । ସେଥିପାଇଁ ସେ ଶିଳ୍ପ ଅନୁଷ୍ଠାନ କଥା ଭାବୁଥିଲେ ।

ଭାରତର ପ୍ରଥମ ପିଢି ଜାତୀୟତାବାଦୀ ନେତା ଭାବେ ଦାଦା ଭାଇ ନରୋଜୀ, ଆର. ସି. ଦତ୍ତ, ରାଣା ଦେଙ୍କ ପରି ମଧୁବାବୁ ବି ଜଣେ ଥିଲେ । ଭାରତର ଅର୍ଥନୈତିକ ଅବସ୍ଥା ବିଷୟରେ ତାଙ୍କର ବିଶ୍ଳେଷଣ ଅତି ସ୍ପଷ୍ଟ ଥିଲା । ତାଙ୍କ ମତରେ ଔପନିବେଶିକ ଶାସନର କୁପ୍ରଭାବ ଯୋଗୁଁ ଓଡିଶା

ଏବଂ ଭାରତରେ ଆର୍ଥିକ ଅବସ୍ଥା ଶୋଚନୀୟ ହେଉଥିଲା । ସେ କହୁଥିଲେ - (ଉଦାହରଣ ସ୍ୱରୂପ) ସରକାର ଏ ଦେଶର ମୃତ ପଶୁମାନଙ୍କର ଚମଡ଼ା ଅଳ୍ପ ଦାମରେ କିଣି ନେଇ ତାଙ୍କ ଦେଶରେ ମିଲ୍ ବସାଇ ଜୋତା ଓ ଅନ୍ୟ ଚମଡ଼ା ଜିନିଷ ତିଆରି କରି ଆଣି ଉଚ୍ଚ ଦାମରେ ଏ ଦେଶରେ ବିକୁଛନ୍ତି । ସେହିପରି ଦେଶରୁ ତୁଳା ଅଳ୍ପ ଦାମରେ କିଣି ନେଇ ତାଙ୍କ ଦେଶରେ ଲୁଗାକଳ ବସାଇ ଲୁଗା ତିଆରି କରି ଆଣି ଏ ଦେଶରେ ବେଶୀ ଦାମରେ ବିକ୍ରୀ କରୁଛନ୍ତି । ଏହିପରି ଭାବେ ମଧୁବାବୁଙ୍କ ସମୟରେ ସବୁ ସ୍ତରରେ ଏ ଦେଶକୁ ବ୍ରିଟିଶ୍‌ମାନେ ଲୁଣ୍ଠନ କରୁଥିଲେ ।

ସେଥିପାଇଁ ସେ ଦେଶୀୟ ଶିଳ୍ପ ଭାବେ ପ୍ରଥମେ ଏକ ଚମଡ଼ା କାରଖାନା ''ଉତ୍କଳ ଟାନେରୀ'' ନାମରେ ପ୍ରତିଷ୍ଠା କଲେ । ତଦ୍ୱାରା ମୁଖ୍ୟତଃ ଦଳିତ ଜାତିର ମୋଚିମାନେ ବିଶେଷ ଭାବେ ଉପକୃତ ହେବା ସଙ୍ଗେ ସଙ୍ଗେ ଅନ୍ୟ ଲୋକମାନେ ମଧ୍ୟ ନିଯୁକ୍ତି ପାଇ ପାରିଲେ ।

ସେ ସେହିପରି ନିଜେ ଟଙ୍କା ଦେଇ ଚରଖା କିଣି ତନ୍ତୀମାନଙ୍କୁ ଦେଲେ ଲୁଗା ବୁଣିବାକୁ । ଏହିସବୁ କାମ ମହାତ୍ମା ଗାନ୍ଧୀଙ୍କ ବହୁ ପୂର୍ବରୁ ସେ ଆରମ୍ଭ କରିଥିଲେ ।

ତାଙ୍କର ଚମଡ଼ା କାରଖାନା ଭାରତରେ ପ୍ରଥମ ଦେଶୀୟ ଶିଳ୍ପ କାରଖାନା । ନିଜେ ସେ କାରଖାନାର ସମସ୍ତ ଦାୟିତ୍ୱ ତୁଲାଉଥିଲେ । ଚମଡ଼ା କଷିବା ପାଇଁ ନୂତନ ଉପାୟ ଏବଂ ନୂତନ କୌଶଳମାନ ନିଜେ ଉଦ୍‌ଭାବନ କରି କାର୍ଯ୍ୟକାରୀ କରୁଥିଲେ । ନାନା ବହିପଢ଼ି ନୂତନ ନୂତନ ଧାରା ସୃଷ୍ଟି କରି, ତାକୁ ପରୀକ୍ଷା ନିରୀକ୍ଷା କରି ଚମଡ଼ାକୁ ଏପରି ଭାବରେ କଷୁଥିଲେ ଯେ, ତାହା ଅତି ଉଚ୍ଚମାନର ହେଉଥିଲା ।

ସେହି ଚମଡ଼ାରେ ସୁନ୍ଦର ସୁନ୍ଦର ମଜଭୁତ ଜୋତା ଓ ଅନ୍ୟ ନାନାପ୍ରକାର ସୌଖୀନ ଜିନିଷ ତିଆରି କରୁଥିଲେ । ଭାରତକୁ ଆସି ଯେଉଁ ୟୁରୋପୀୟ ଚମଡ଼ା କମ୍ପାନୀମାନେ କାରଖାନା ବସାଇବାକୁ ଆରମ୍ଭ କରିଥିଲେ, ତାଙ୍କର ଚମଡ଼ା କଷା ଠିକ୍ ଭାବେ ହେଉ ନଥିବାରୁ ତାଙ୍କର କ୍ଷତି ହେଉଥିଲା ବେଳେ ମଧୁବାବୁଙ୍କର ପ୍ରଚୁର ଲାଭ ହେଉଥିଲା । ''ଉତ୍କଳ ଟାନେରୀ''ର ଜୋତା ଓ ବୁଟ ଏତେ ଉଚ୍ଚକୋଟୀର ଥିଲା ଯେ, ୟୁରୋପ, ଆମେରିକା, ଜାପାନ

ପ୍ରଭୃତି ଦେଶମାନଙ୍କରେ ତାହାର ଚାହିଦା ପ୍ରଚୁର ଥିଲା । ପ୍ରଥମ ଯୁଦ୍ଧ ସମୟରେ ୟୁରୋପରୁ ଉତ୍କଳ ଟାନେରୀ ବୁଟ୍ ବହୁ ବରାଦ ଆସୁଥିଲା ।

କିନ୍ତୁ ଟାନେରୀ କିପରି ଚାଲିଥିଲା ତାହା ଅନୁଭବ କରିହେବ ବିହାର -ଓଡ଼ିଶା ସରକାରଙ୍କର ଶିଳ୍ପ ବିଭାଗର ଡାଇରେକ୍ଟର ଟାନେରୀ ପରିର୍ଶନ ପରେ ଦେଇଥିବା ରିପୋର୍ଟରୁ । ସେ ଲେଖିଥିଲେ - ''ଟାନେରୀ ମୂଳଧନ ଅଭାବ, ସବୁ ସମୟରେ ତତ୍ତ୍ୱ ନେବାକୁ ବିଶେଜ୍ଞଙ୍କର ଅଭାବ ଏବଂ ଦାୟିତ୍ୱପୂର୍ଣ୍ଣ ପରିଚାଳନା ପାଇଁ ଉପଯୁକ୍ତ ପରିଚାଳକଙ୍କ ଅଭାବ । ଏହା ସତ୍ତ୍ୱେ ଟାନେରୀ ଯାହା କାମ କରିଛି ଏବଂ କରୁଛି ତାହା ଅତି ଆଶାଜନକ ।'' ଏହିପରି ଅବସ୍ଥାରେ ଶିଳ୍ପ କାରଖାନାର ସମଷ୍ଟିଗତ ଏକକ ତତ୍ତ୍ୱାବଧାନକାରୀ, ବିଶେଷଜ୍ଞ ଏବଂ ପରିଚାଳକ ଥିଲେ ମଧୁବାବୁ ସ୍ୱୟଂ ।

ମଧୁବାବୁଙ୍କର ଓକିଲାତିକାମ, ଦେଶ ସେବା କାମ, ତାଙ୍କ ସୃଷ୍ଟ ନାନା ଅନୁଷ୍ଠାନମାନଙ୍କର ପରିଚାଳନା ଭାର ପ୍ରଭୃତି ନାନା ପ୍ରକାର କାର୍ଯ୍ୟବ୍ୟସ୍ତତା ଯୋଗୁଁ ସେ ସଂପୂର୍ଣ୍ଣ ଭାବେ ଟାନେରୀର କାର୍ଯ୍ୟପ୍ରତି ଦୃଷ୍ଟି ଦେଇ ପାରୁନଥିଲେ । କିନ୍ତୁ ସବୁଠାରୁ ଟାନେରୀ ବ୍ୟବସାୟ ପ୍ରତି ମଧୁବାବୁଙ୍କର ଆତ୍ମଘାତୀ ବିରୋଧାତ୍ମକ କାର୍ଯ୍ୟଥିଲା ଯେ ସେ ଚାହୁଁଥିଲେ ଟାନେରୀରୁ ଯେଉଁ ସବୁ ଜୋତା ବାହାରିବ ତାହା ନିଖୁଣ ଥିବ । ନିଜେ ଟାନେରୀ ଯାଇ କାରଖାନାରୁ ବାହାରିଥିବା ଯୋତା ସବୁ ପରୀକ୍ଷା କଲା ସମୟରେ ଯଦି ଗୋଟିଏ ହଳ ଖରାପ ସେ ଦେଖିଲେ, ତେବେ ଏକା ଥରକେ ବାହାରିଥିବା ସବୁ ଜୋତା ସେ ପୋଡ଼ି ଦେଉଥିଲେ । କମ ଦାମରେ ମଧ୍ୟ ବିକ୍ରୀ କରିବାକୁ ପ୍ରସ୍ତୁତ ନଥିଲେ । ଅନ୍ୟମାନେ ଆପତ୍ତି କଲେ କି ଦୁଃଖ କଲେ ସେ କହୁଥିଲେ, ''ଯଦି ଦେଶରେ ବା ବିଦେଶରେ କାହାରି ହାତରେ ହଳେ ଖରାପ ଜୋତା ପଡ଼ିଯିବ ଏବଂ ସେ କହିବ ଓଡ଼ିଆମାନେ ଠକ, ତାହା ମୁଁ ସହି ପାରିବି ନାହିଁ । ମୋ ଜାତି ନାମରେ ବଦନାମ୍ ମୋ ପକ୍ଷରେ ସହିବା ଅସମ୍ଭବ ।'' ଅନ୍ୟ ଲୋକ ଏକ ବ୍ୟବସାୟକୁ ଲାଭ ଦୃଷ୍ଟିରେ ଦେଖେ । କିନ୍ତୁ ମଧୁବାବୁଙ୍କ ଦୃଷ୍ଟିରେ ବ୍ୟବସାୟ ମଧ୍ୟରେ ମଧ୍ୟ ନିହିତ ଥିଲା ଜାତିର ସମ୍ମାନ ଓ ଦେଶର ମର୍ଯ୍ୟାଦା । ମୁଖ୍ୟତଃ ଏହି କାରଣରୁ ଏବଂ ନିଜେ ବ୍ୟବସାୟର ସବୁ ଦିଗ ସବୁ ସମୟରେ ଦେଖି ନ ପାରିବା ଯୋଗୁଁ ଟାନେରୀ ଆସ୍ତେ ଆସ୍ତେ ଦୁର୍ଦ୍ଦଶାଗ୍ରସ୍ତ

ହେବାକୁ ଲାଗିଲା । ତାପରେ ୧୯୨୧ ମସିହାରୁ ମଧୁବାବୁ ମନ୍ତ୍ରୀହୋଇ ପାଟନାରେ ରହିଯିବା କାରଣରୁ ଟାନେରୀ ଅବସ୍ଥା ଶୋଚନୀୟ ହୋଇ ପଡ଼ିଲା । ମନ୍ତ୍ରୀ ପଦରୁ ଇସ୍ତଫା ଦେଇ କଟକ ଫେରି ଆସିଲା ପରେ ଋଣ କରି ତାକୁ ବଞ୍ଚାଇ ରଖିବାକୁ ଚେଷ୍ଟା କଲେ । କିନ୍ତୁ ଟାନେରୀ ଆୟରୁ ଋଣ ପରିଶୋଧ ହେବା କଷ୍ଟକର ଥିଲା ।

ସେହି ସମୟରେ ମହାତ୍ମାଗାନ୍ଧୀ ମଧୁବାବୁଙ୍କ ଆମନ୍ତ୍ରଣରେ ଆସି ତାଙ୍କର ଅତିଥି ହୋଇ ଅବସ୍ଥାନ କରୁଥିବା ସମୟରେ ଉତ୍କଳ ଟାନେରୀ ଦେଖି ମୁଗ୍ଧ ହୋଇଥିଲେ । ତେବେ ଆର୍ଥିକ ସାହାଯ୍ୟ ଯୋଗାଡ଼ କରିଦେବାର ପ୍ରତିଶ୍ରୁତି କିଛି ଦେଇ ନଥିଲେ । କିନ୍ତୁ ତାଙ୍କ ଇଙ୍ଗିତରେ କଲିକତାର ବ୍ୟବସାୟୀ ରଙ୍ଗଲାଲ, ଟାନେରୀକୁ କିଣି ନେବାକୁ ପ୍ରସ୍ତୁତ ହୋଇଥିଲେ । କିନ୍ତୁ ଓଡ଼ିଆଙ୍କ ସମ୍ପତ୍ତିକୁ ଅନ୍ୟ ରାଜ୍ୟର ଲୋକଙ୍କୁ ବିକ୍ରୀ କରିବାକୁ ମଧୁବାବୁ ପ୍ରସ୍ତୁତ ନଥିଲେ । ବିକ୍ରୀ ପରିବର୍ତ୍ତେ ସାହାଯ୍ୟ ଯୋଗାଡ଼ ସେ ମହାତ୍ମାଙ୍କଠାରୁ ଆଶା କରିଥିଲେ ଯାହା ସେ ପରେ ଫେରସ୍ତ ଦେଇଥାନ୍ତେ ।

ମଧୁବାବୁଙ୍କର ବହୁ ଋଣଦାତା ଡିଗ୍ରୀ ଜାରି କରି ଋଣ ଆଦାୟରେ ଲାଗିଗଲେ । ତାଙ୍କ ଅସ୍ଥାବର ସମ୍ପତ୍ତି ଆସବାବ ପତ୍ର ଇତ୍ୟାଦି ନିଲାମ ହୋଇଗଲା । ସବୁଠାରୁ ବଡ଼ ଋଣଦାତା ଥିଲେ କକ୍ସ କମ୍ପାନୀ । କମ୍ପାନୀର ମାଲିକ ଜାଣିଥିଲେ, ଟାନେରୀ ତିଆରି ଜୋତା ଉଚ୍ଚକୋଟୀର ଥିବାରୁ ୟୁରୋପରେ ତାହାର ଚାହିଁଦା ପ୍ରଚୁର ଥିଲା । ତେଣୁ ସେ ଆସି ମଧୁବାବୁଙ୍କୁ ପ୍ରସ୍ତାବ ଦେଲେ ଯେ ଟାନେରୀର ଜୋତାରେ ''ଉତ୍କଳ ଟାନେରୀ'' ସିଲ ନ ରହି ''କକ୍ସ କମ୍ପାନୀ'' ସିଲ ରହୁ । ଏ ''ଗୁଡ଼ ଉଇଲ'' ପାଇଁ ସେ ପଚାଶ ହଜାର ଟଙ୍କା ଦେବେ । ଆଉ ଦିନକୁ ସେ ଶହେହଳ ଜୋତା ନେବେ । ଟାନେରୀ ମଧୁବାବୁଙ୍କ ପରିଚାଳନାରେ ରହିବ । ଜୋତା ନେବା ପାଇଁ ସେ ଅଗ୍ରୀମ ଲକ୍ଷେ ଟଙ୍କା ଦେବେ । ଏହି ପ୍ରସ୍ତାବ ଗ୍ରହଣ କରିଥିଲେ ଟାନେରୀ ରକ୍ଷା ପାଇଯାଇଥାନ୍ତା ଏବଂ ମଧୁବାବୁ ମଧ ଉପକୃତ ହୋଇଥାନ୍ତେ । କିନ୍ତୁ ଓଡ଼ିଆ ଜାତିର ଇଜ୍ଜତ – ''ଉତ୍କଳ ଟାନେରୀ'' ନାମକୁ ବିକ୍ରୟ କରି ସେ ଜାତି ଦ୍ରୋହୀ ଓ ଦେଶଦ୍ରୋହୀ ହେବାକୁ ଉଚିତ ମନେ କରି ନଥିଲେ । ତେଣୁ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ ।

ଏହିପରି ଏକ ଅଦ୍ଭୁତ ମିଶ୍ରାସର, ଅନମନୀୟ, ଅଚିନ୍ତନୀୟ, ଜାତିପ୍ରେମୀ ଓ ଦେଶପ୍ରେମୀ ଥିଲେ ମଧୁବାବୁ । ତାଙ୍କର ଏ ପ୍ରକାର ଅଭାବନୀୟ ଜାତିପ୍ରେମ ଯୋଗୁଁ ସେ ହୋଇଥିଲେ ବାସହରା ଏବଂ ନିଃସ୍ୱ ।

ଟାନେରୀ ନିଲାମ ହେବା ନିଶ୍ଚିତ ହେଲା ପରେ ସେ ଜୀବନରେ ପ୍ରଥମ କରି ବାହାରି ଥିଲେ ଅନ୍ୟର ଦ୍ୱାରସ୍ଥ ହେବା ନିମନ୍ତେ - ନିଜ ସ୍ୱାର୍ଥରକ୍ଷା ନିମନ୍ତେ ନୁହେଁ, ଜାତିର ମାନ ରକ୍ଷା ନିମନ୍ତେ, ଜଣେ ଓଡ଼ିଆଙ୍କ ନିକଟକୁ । ସେ ଯାଇ ପୁରୀ ରାଜାଙ୍କୁ ଅନୁରୋଧ କଲେ ଯେ ରାଜା ଟାନେରୀକୁ ନିଲାମରେ ନିଅନ୍ତୁ । ଗଜପତି ମହାରାଜା ଏହାକୁ ଆଦେଶ ଭାବେ ଗ୍ରହଣ କରିଥିଲେ ।

ସବ୍‌ଜଜ୍‌ଙ୍କ କୋର୍ଟରେ ଟାନେରୀର ମୂଲ୍ୟ ଧାର୍ଯ୍ୟ କରାଯାଇଥିଲା ଅଢ଼େଇ ଲକ୍ଷ ଟଙ୍କା । କିନ୍ତୁ ଭାଗ୍ୟର ବିଡ଼ମ୍ବନା ତାହା ୬୫୦୦୦ ଟଙ୍କାରୁ ଅଧିକରେ ନିଲାମ ଉଠିଲା ନାହିଁ । ଅଢ଼େଇ ଲକ୍ଷ ଟଙ୍କାରେ ନିଲାମ ଉଠିଥିଲେ ଆଶା କରାଯାଉଥିଲା କକ୍ସ କମ୍ପାନୀ ଟଙ୍କା ସହ ଅନ୍ୟ ଋଣ ଦାତାମାନଙ୍କର ଋଣ ମଧ୍ୟ ପରିଶୋଧ ହୋଇ ପାରିଥାନ୍ତା ।

ଜଣେ ଡିଗ୍ରୀଦାର କେଶ୍ କଲେ ଯେ ଶୈଳବାଳାଙ୍କର ରୋଜଗାର ନଥିଲା । ସେ ଯାହା ସମ୍ପତ୍ତି କରିଛନ୍ତି, ତାହା ସବୁ ମଧୁବାବୁଙ୍କର । ତେଣୁ ତାଙ୍କ ସମ୍ପତ୍ତି ଉପରେ ଶୈଳବାଳାଙ୍କର ଅଧିକାର ନାହିଁ । ତାହା ସବୁ ମଧୁବାବୁଙ୍କର ।

ଶୈଳବାଳା ତାଙ୍କ ଆତ୍ମଜୀବନୀ "Look Back and Ahead"ରେ ଲେଖନ୍ତି : ହାଇକୋର୍ଟରେ ୪୫ବର୍ଷର ପୁରୁଣା ହିସାବଖାତା ଏବଂ ବ୍ୟାଙ୍କ କାଗଜପତ୍ର ସବୁ ଦାଖଲ କରି ତାଙ୍କର ସବୁ ସମ୍ପତ୍ତି ତାଙ୍କ ନିଜ ଟଙ୍କାରେ କିଣିଛନ୍ତି ବୋଲି ପ୍ରମାଣ କଲେ । ସେ ପୁଣି ଲେଖନ୍ତି –ସେ ଉଦାର ଭାବେ ପ୍ରଚୁର ପରିମାଣର ହାତଖର୍ଚ୍ଚ ବାବାଙ୍କଠାରୁ ପାଉଥିଲେ । ସେ ଯେଉଁ ହାତଖର୍ଚ୍ଚ ପାଉଥିଲେ ସମସ୍ତ ଖର୍ଚ୍ଚ ନ କରି ବ୍ୟାଙ୍କରେ କିଛି ରଖୁଥିଲେ । ବ୍ୟାଙ୍କରେ ରଖୁଥିବା ଟଙ୍କାକୁ ଲାଭମିଳୁଥିବା ଜମାରେ ଖଟାଉ ଥିଲେ । ଲାଭ ଟଙ୍କା ଓ ଅନ୍ୟ ଟଙ୍କାକୁ ବାରମ୍ବାର ଖଟାଇ ସେ ଯଥେଷ୍ଟ ଟଙ୍କା ବ୍ୟାଙ୍କରେ ରଖିଥିଲେ । ସେହି ଟଙ୍କାରେ ସେ ସମ୍ପତ୍ତି କରିଛନ୍ତି ଓ ନିଲାମ ଧରିଛନ୍ତି । ହିସାବଖାତା ଓ ବ୍ୟାଙ୍କ ଆକାଉଣ୍ଟ ଖାତା ମାଧ୍ୟମରେ ସେ କଡ଼ାଗଣ୍ଡା ପାହି ସହିତେ ପ୍ରମାଣ କରିଥିଲେ ତାଙ୍କର ଦାବି । ତାହା ଏତେ ନିର୍ଭୁଲ ଥିଲା ଯେ, ଅନ୍ୟପକ୍ଷ ଓକିଲ ବାଧ୍ୟହୋଇ ମକଦ୍ଦମା ଉଠାଇ ନେଇଥିଲେ ।

ମଧୁବାବୁଙ୍କୁ ତାଙ୍କ ଦେଶ ସେବା ନିମନ୍ତେ ହୀନିମାନ ହେବାକୁ ପଡ଼ିଥିଲା । ତା ସଙ୍ଗେ ସଙ୍ଗେ ତାଙ୍କ କନ୍ୟାଙ୍କୁ ମଧ୍ୟ ଅପମାନିତ ହେବା ଅବସ୍ଥାକୁ ଆସିବାକୁ ପଡ଼ିଥିଲା । କିନ୍ତୁ ଶୈଳବାଳା ସେ ପରିସ୍ଥିତିକୁ ସୁଚାରୁ ରୂପେ ମୁକାବିଲା କରି ନିଜର ଓ ମଧୁବାବୁଙ୍କର ସମ୍ମାନ ରକ୍ଷା କରିବାକୁ ସକ୍ଷମ ହୋଇଥିଲେ ।

ଅନ୍ୟ ଡିଗ୍ରୀଦାର କୋର୍ଟରେ ଆପତ୍ତି କଲେ ଯେ ମଧୁବାବୁ ଓକିଲାତିରୁ ବହୁ ଟଙ୍କା ପାଉଛନ୍ତି । ରୋଜଗାରକୁ କ୍ରୋକ କରାଯାଉ ଋଣ ବାବଦକୁ । ମଧୁବାବୁଙ୍କୁ ମାସିକ ହିସାବ କୋର୍ଟରେ ଦାଖଲ କରିବାକୁ ହେଉଥିଲା । ସେତେବେଳେ ତାଙ୍କର ରୋଜଗାର ୫୦୦ ରୁ ୬୦୦ ଟଙ୍କା ହେଉଥିଲା ।

ଏହିପରି ଅବସ୍ଥାରେ ମଧୁବାବୁଙ୍କର ବଦାନ୍ୟତାର ଏକ ଉଦାହରଣ ଏଠାରେ ଦେଉଛି । ପ୍ରତିମାସ ଦାଖଲ କରୁଥିବା ରୋଜଗାରର ହିସାବ ଖାତାରୁ ଉପଲବ୍ଧ ତଥ୍ୟ ଅନୁଯାୟୀ ପୁରୀର ମଧୁପାତ୍ର ବୋଲି ଗୋଟିଏ ଗରିବ ଲୋକ ଏକ ସେସନ୍ସ କେଶ୍‌ରେ ଫସିଯାଇଥାଏ । ସେ ଆସି ମଧୁବାବୁଙ୍କ ନିକଟରେ ପହଞ୍ଚିଲା । ମଧୁବାବୁ କହିଲେ – ''ମୋର ଫିସ୍ କଥା ଜାଣିଛ ତ ।'' ମଧୁପାତ୍ର ବିକଳ ଭାବେ କହିଲା – ''ଆଜ୍ଞା ଶହେଟଙ୍କା ନେଇ କରି ଆସିଛି । ତା'ଠାରୁ ବେଶୀ ଟଙ୍କା ଦେଇ ପାରିବି ନାହିଁ ।'' ଟଙ୍କା ଥୋଇ ଦେଲା ।

ମଧୁବାବୁ ନୀରବ ରହିଲେ । ମଧୁପାତ୍ର ବୁଝିପାରିଲେ ମଧୁବାବୁଙ୍କ ନୀରବତା କଥା । ମଧୁପାତ୍ର ଆର୍ତ୍ତନାଦ କରି ଅସହାୟ କଣ୍ଠରେ କହି ଉଠିଲା – ''ଆପଣ ଠିଆ ନ ହେଲେ ମୁକୁଳି ପାରିବି ନାହିଁ ବାବୁ । ପୁରୀର ସବୁ ଓକିଲ ମତେ ଆପଣଙ୍କ ନିକଟକୁ ପଠାଇ ଦେଲେ । ଆପଣ ରଖିଲେ ରଖିବେ ମାରିଲେ ମାରିବେ ।''

ତାର ବିକଳ ଅବସ୍ଥା ଦେଖି ମଧୁବାବୁଙ୍କ ହୃଦୟ ତରଳିଗଲା । ସେ କହିଲେ, ''ତୁ ଯାଆ ପୁରୀର ଜଣେ ଓକିଲଙ୍କୁ ଦେଇ ମକଦ୍ଦମା ଚଳେଇବା କାମ କର । ମୁଁ ଯାଇଁ ଆରଗୁମେଣ୍ଟ କରିବି ।''

ମଧୁବାବୁ ଯେତେବେଳେ ଆରଗୁମେଣ୍ଟ କରିବାକୁ ଗଲେ ଜାଣିଲେ ଯେ ସେଠିକା ଓକିଲଙ୍କୁ ସେ ଯାହା ଦେଇଛି କିଛି ନୁହେଁ । ବୋଧେ ମଧୁବାବୁ କହିଥିବା କଥା ଶୁଣି ସେ ଫିସ ନ ପାଇଲେ ମଧ୍ୟ ମକଦ୍ଦମା ଚଳାଇ ଥିଲେ । ମଧୁବାବୁ ସେ ଓକିଲଙ୍କୁ ତାଙ୍କ ୧୦୦ଟଙ୍କାରୁ ୫୦ଟଙ୍କା ଫିସ ବାବଦକୁ ଦେଲେ ।

ରାୟ ପରେ ଅପିଲ କରିବାକୁ କାଗଜପତ୍ର ନକଲ ଆଣିବାକୁ ୨୫ଟଙ୍କା ପଡ଼ିଲା । ତାକୁ ମଧ୍ୟ ମଧୁବାବୁ ତାଙ୍କ ୧୦୦ଟଙ୍କାରୁ ଦେଲେ । ଶେଷକୁ ବାକି ଯାହା ରହିଲା ମାତ୍ର ୨୫ଟଙ୍କା ତାହାହିଁ ଥିଲା ତାଙ୍କ ରୋଜଗାର ସେହି ମକଦ୍ଦମାରେ । ଅଥଚ ଏହି ମହାନୁଭବ ମହାମାନବ ଶେଷ ଜୀବନରେ ହୋଇଥିଲେ ହୀନିମାନ ।

ସେଥିରେ ମଧ୍ୟ ଦାନ ଦକ୍ଷିଣା ଊଣା ନଥିଲା । ଥରେ ଶୈଳବାଳା ବ୍ୟସ୍ତ ହୋଇ କହିଲେ – "ବାବା ଏ ଭିକାରୀ ପରି ଲୋକମାନେ ଏ ଘରକୁ ଆସିବା ଦରକାର ନାହିଁ ।" ମଧୁବାବୁ କହିଲେ – "ମା ମୁଁ ତ ଗୋଟେ ଭିକାରୀ । ମୋର କଣ ଏ ଘରେ ସ୍ଥାନ ନାହିଁ । ମତେ ମନା" ଶୈଳବାଳା ମର୍ମାହତ ହୋଇ ନୀରବ ରହିଲେ ।

ଏହି ଅବସରରେ ମୋର ଗୋଟେ କଥା ମନେ ପଡୁଛି । ତାହା ନ ଲେଖି ରହିପାରୁ ନାହିଁ । ଥରେ କଟକ ପରମାର୍ଥୀ ମଠକୁ ଜଣେ ଗୌଡ଼ୀୟ ଶାସ୍ତ୍ରଜ୍ଞ ଗୋସ୍ୱାମୀ ଆସିଥାନ୍ତି । ସେଥିପାଇଁ ରେଭେନ୍‌ସା କଲେଜର ଇତିହାସ ବିଭାଗ ଅଧ୍ୟାପକ ନଳିନାକ୍ଷ ସାନ୍ୟାଲ ବାବୁ ଏକ ସଭାର ଆୟୋଜନ କରିଥିଲେ । ସେ ସଭାରେ ଯୋଗ ଦେବାକୁ ନିଜେ ଆସି ମଧୁବାବୁଙ୍କୁ ନିମନ୍ତ୍ରଣ କରିଥିଲେ । ବାର୍ଦ୍ଧକ୍ୟ ଅବସ୍ଥାରେ ଶାରୀରିକ ପୀଡ଼ା ସତ୍ତ୍ୱେ ମଧୁବାବୁ ନଳିନାକ୍ଷ ବାବୁଙ୍କ ନିମନ୍ତ୍ରଣକୁ ଏଡ଼ାଇ ପାରି ନଥିଲେ ।

ଗୋସ୍ୱାମୀ ମହାଶୟଙ୍କର ଶୁଦ୍ଧ ଭକ୍ତି ଉପରେ ଦୀର୍ଘ ଭାଷଣ ପରେ ମଧୁବାବୁ ଯିବାକୁ ଉଠିବାରୁ, ନଳିନାକ୍ଷ ବାବୁ ମଧୁବାବୁଙ୍କୁ ଅନୁରୋଧ କଲେ କିଛି କହିବାକୁ । ମଧୁବାବୁ "କଣ କହିବେ ବୋଲି" କହି କୁଣ୍ଠିତ ଭାବେ ଉଠି ଗୋଟିଏ ସଂକ୍ଷିପ୍ତ ବାକ୍ୟ କହି, ବସିଲେ । ବାକ୍ୟଟି ଥିଲା – "ବଡ଼ମାନଙ୍କର ପ୍ରୀତି ବାଲି ବନ୍ଧ ସଦୃଶ ।"

ମଧୁବାବୁ ଭାଷଣ ଦେବାରେ ସୁଦକ୍ଷ ଥିଲେ । ହିନ୍ଦୁ ଧର୍ମ ବିଷୟରେ ତାଙ୍କର ପାଣ୍ଡିତ୍ୟ କିଛି କମ୍ ନଥିଲା, ଯଦିଓ ସମୟର ପ୍ରଭାବରେ ଖ୍ରୀଷ୍ଟିଆନ ହୋଇ ଯାଇଥିଲେ । ତେଣୁ ତାଙ୍କର ସଂକ୍ଷିପ୍ତ ବାକ୍ୟଟିର ଭାଷଣ ଶ୍ରୋତାମାନଙ୍କ ମନରେ ଗଭୀର ରେଖାପାତ କରିଥିଲା । ଏ ବାକ୍ୟର ବ୍ୟଞ୍ଜନା ଓ ଅନ୍ତର୍ନିହିତ ତାତ୍ପର୍ଯ୍ୟ ଅନ୍ୟମାନଙ୍କ ମନକୁ ସେଦିନ ଯେପରି ଆଲୋଡ଼ିତ କରିଥିଲା, ମୋ ମନରେ ଆଜି ସେହିପରି ଆଲୋଡ଼ନ ସୃଷ୍ଟି କରୁଛି । ମୋ କ୍ଷୁଦ୍ର ବୁଦ୍ଧିରେ ମୁଁ ଯାହା ଅନୁଭବ କରୁଛି ତାହା ପ୍ରକାଶ କରିବା ପୂର୍ବରୁ କ୍ଷମା ମାଗି ନେଉଛି ।

ମଧୁବାବୁ ବେଙ୍ଗଲ-ବିହାର-ଓଡ଼ିଶା ଲେଜିସଲେଟିଭ କାଉନ୍‌ସିଲ, ପରେ ବିହାର-ଓଡିଶା କାଉନ୍‌ସିଲ ଓ ଭାଇସରୟ କାଉନ୍‌ସିଲର ସଭ୍ୟ ହୋଇଥିଲେ । ସଭ୍ୟ ଥିବା ସମୟରେ କେତେ ବଡ଼ ବଡ଼ ଲୋକ ତାଙ୍କର ବନ୍ଧୁ ହୋଇଥିଲେ ଓ ତାଙ୍କ ପ୍ରତି ଶ୍ରଦ୍ଧାବାନ ଥିଲେ । ବିହାର ରାଜ୍ୟ କଥା ଛାଡ଼ି ଓଡ଼ିଶାରେ ପ୍ରାୟ ସବୁ ରାଜା, ମହାରାଜା, ଜମିଦାର ତାଙ୍କର ବନ୍ଧୁ ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରୁ କେହି କେହି ମଧ ତାଙ୍କ ଦ୍ୱାରା ବିପଦ ବେଳେ ଅଶେଷ ଭାବେ ସାହାଯ୍ୟ ପ୍ରାପ୍ତ ହୋଇ ଥିଲେ । କିନ୍ତୁ ମଧୁବାବୁଙ୍କ ବିପଦ ବେଳେ କେହି ତାଙ୍କ ପାଖେ ଠିଆ ହୋଇ ନଥିଲେ କି ସାହାଯ୍ୟର ହାତ ବଢ଼ାଇ ନଥିଲେ ।

ଗୋଟିଏ ମହାରାଜାଙ୍କ କଥା ଉଲ୍ଲେଖ କରୁଛି । କେଉଁଝର ମହାରାଜାଙ୍କର ଅତ୍ୟାଚାର ଯୋଗୁଁ ରାଜ୍ୟରେ ମେଳି ହେଲା । କମିଶନର୍ ତଦାରଖ କରି ରିପୋର୍ଟ ପଠାଇଲେ ଲେଫଟନାଣ୍ଟ ଗଭର୍ଣ୍ଣରଙ୍କ ନିକଟକୁ । ଗଭରନର୍ ରାଜାଙ୍କୁ ରାଜ୍ୟଚ୍ୟୁତ ଆଦେଶ ଦେଲେ- ତୁରନ୍ତ ରାଜ୍ୟ ଛାଡ଼ି ନଗଲେ ତାଙ୍କୁ ଆରେଷ୍ଟ କରାଯିବ । ମହାରାଜା ପଳାଇ ଆସି ମେଘ ଅନ୍ଧାର ରାତିରେ ମଧୁବାବୁଙ୍କ କୋଠିରେ ପହଞ୍ଚିଲେ । ଦେହରେ ମଇଳା ଲୁଗା, ମୁହଁରେ ବଲବଲ୍ ଦାଢ଼ୀ । ମଧୁବାବୁ ଚିହ୍ନିଲେ । ତାଙ୍କୁ ବସାଇ ସବୁକଥା ଶୁଣିଲେ । ଆଶ୍ୱାସନା ଦେଲେ କଲିକତା ଯାଇଁ ଗଭର୍ଣ୍ଣରଙ୍କ ନିକଟରେ ଅପିଲ କରିବେ । ତାଙ୍କୁ ତାଙ୍କ କୋଠିକୁ ଯିବାକୁ କହିଲେ । କିନ୍ତୁ ସେ ଡରରେ କୋଠିକୁ ନଯାଇ ସେହିଠାରେ ମଧୁବାବୁଙ୍କ ଘରେ ରହିବେ ବୋଲି କହିଲେ । ଟେବୁଲ ଉପରୁ ଗୋଟେ ଅଲେଖା କାଗଜ ଆଣି ସେହି ସାଧା କାଗଜ ଉପରେ ଦସ୍ତଖତ କରି ଦେଇ ହାଣ୍ଡନୋଟ୍ ଭାବେ ମଧୁବାବୁଙ୍କ ହାତକୁ ବଢ଼ାଇ

ଦେଲେ ଫିସ୍ ବାବଦକୁ । ମଧୁବାବୁ ସେ କାଗଜକୁ ଟିକି ଟିକି କରି ଚିରି ପକାଇ ଦେଲେ । ମଧୁବାବୁ ମକଦ୍ଦମା ଲଢ଼ି ଜିତିଲେ । ମହାରାଜା ରାଜ୍ୟ ଲାଭ କରି ରାଜ୍ୟକୁ ଯିବାରେ ପୁନର୍ବାର ମେଳି ଆରମ୍ଭ ହେଲା । ମଧୁବାବୁ ନିଜେ ଯାଇ ସେହି ମେଳିଆ ଲୋକଙ୍କୁ ବୁଝାଇ ରାଜାଙ୍କ ସପକ୍ଷକୁ ଆଣିଲେ । ରାଜା ନିର୍ବିବାଦରେ ରାଜ୍ୟ ଭୋଗ କଲେ ।

କିନ୍ତୁ ମଧୁବାବୁ ଯେତେବେଳେ ଋଣଗ୍ରସ୍ତ ଏବଂ ତାଙ୍କର ଘରବାଡ଼ି ନିଲାମ ହେଉଥିଲା ସେତେବେଳେ କେଉଁଝର ମହାରାଜାଙ୍କ ରାଜକୋଷରୁ ଦୁଇ ତିନି ଲକ୍ଷଟଙ୍କା ଦେଇଥିଲେ କଣ ରାଜକୋଷ ଖାଲି ହୋଇ ଯାଇଥାନ୍ତା ? କିନ୍ତୁ ସେତେବେଳେ ମଧୁବାବୁଙ୍କ କଥା ମହାରାଜଙ୍କର ମନେ ପଡ଼ି ନଥିଲା ।

ସବୁ ଲୋକଙ୍କ ସହ ଋଣ ଦାତାମାନେ ଜାଣିଥିଲେ ମଧୁବାବୁ ନିଜ ସୁଖ ସୌଖୀନ ବା ବିଳାସ ବ୍ୟସନ ନିମନ୍ତେ ଋଣ କରି ନ ଥିଲେ । ଦେଶ ସେବା ଓ ଜାତିର ସମ୍ମାନ ରଖିବା ଉଦ୍ଦେଶ୍ୟରେ ହିଁ ସେ ଋଣ କରିଥିଲେ । ଋଣ କରୁ କରୁ ମଧୁବାବୁ ପାରଳା ମହାରାଜାଙ୍କ ଠାରୁ ମଧ୍ୟ କିଛି ଋଣ କରିଥିଲେ ।

ସାଧାରଣ ଋଣ ଦାତାମାନଙ୍କର ଟଙ୍କା ଲୋଭ ଛଡା, ଦେଶ ପ୍ରେମ କି ଜାତି ପ୍ରୀତି ହୃଦୟରେ ନ ଥାଏ । ମଧୁବାବୁ ଋଣ ପରିଶୋଧ କରି ନ ପାରିବାରୁ ସେମାନେ ମୋକଦ୍ଦମା କଲେ । ଦେଶ ପ୍ରେମୀ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଅନ୍ୟ ଋଣ ଦାତାଙ୍କ ପରି ମଧ୍ୟ ମଧୁବାବୁଙ୍କୁ ଦେଇଥିବା ଋଣର ସୁଧମୂଳ ସବୁ ହିସାବ କରି ମୋଟ ଚବିଶ ହଜାର ଛଅସହ ବାଉନ ଟଙ୍କା ଆଠ ଅଣା ଆଦାୟ ନିମନ୍ତେ ମଧୁବାବୁଙ୍କ ନାମରେ ମୋକଦ୍ଦମା କଲେ । ମଧୁବାବୁଙ୍କ ସହ ତାଙ୍କର ଘନିଷ୍ଠତା ଦୃଷ୍ଟିରୁ ଲୋକ ଲୋଚନରେ ଏହା ଶୋଭନୀୟ ହେଲାନାହିଁ ।

କିନ୍ତୁ ଭଗବାନଙ୍କ ଲୀଳାଖେଳା ନର ଦେବତାଙ୍କୁ ଅଗୋଚର । ଋଣ ଦାତାମାନେ ଡିଗ୍ରୀ କରି, ଡିଗ୍ରୀଜାରୀ ମାଧ୍ୟମରେ ମଧୁବାବୁଙ୍କ ଅସ୍ଥାବର ଆସବାବପତ୍ର ସହ ଲାଇବ୍ରେରୀକୁ ନିଲାମ କରି ନେଇଯିବା ଦେଖି ପାରଳା ମହାରାଜାଙ୍କ ପ୍ରାଣରେ ଯୁଗପତ୍ ପରିବର୍ତ୍ତନ ଆସିଲା । ତାଙ୍କ ମନରେ

ମଧୁବାବୁଙ୍କ ପ୍ରତି ପ୍ରଗାଢ ସମବେଦନା ଏବଂ ସଦୟ ଭାବ ଜାତ ହେଲା । ତେଣୁ ସେ ତାଙ୍କ ମୋକଦ୍ଦମା ମାଧ୍ୟମରେ ମଧୁବାବୁଙ୍କ ଘରବାରିକୁ ଋଣ ଆଦାୟ ନିମନ୍ତେ ଡିଗ୍ରୀ ହେବାପୂର୍ବରୁ ଜବତ (attach) କରି ରଖିଦେଲେ । ଏହା ଦ୍ୱାରା ଅନ୍ୟ ଋଣ ଦାତାମାନେ ତାଙ୍କ ଘରବାରି ଉପରେ ହାତଦେଇ ପାରିଲେ ନାହିଁ । ପାରଳା ମହାରାଜା ସବ୍‌ଜଜ୍ କୋର୍ଟରୁ ଡିଗ୍ରୀ ପାଇଲା ପରେ ଡିଗ୍ରୀଜାରୀ ମଧ୍ୟ କଲେ ନାହିଁ । ଡିଗ୍ରୀଦାର ମହାରାଜା ନିଜ ସ୍ଥାନରେ ମଧୁବାବୁଙ୍କ ଦ୍ୱାରା ପ୍ରତିପାଳିତ ଚନ୍ଦ୍ରକୁମାର ହାଜରା, ଶୈଳବାଳାଙ୍କ ଭାଇଙ୍କୁ ଡିଗ୍ରୀଦାର ରୂପେ ସ୍ଥଳାଭିଷିକ୍ତ କରାଇଲେ ! ଏହାଦ୍ୱାରା ଚନ୍ଦ୍ରକାନ୍ତ ଘରର ଡିଗ୍ରୀଦାର ରୂପେ ମାଲିକ ହୋଇ ରହିଲେ । ମଧୁବାବୁ ସାରା ଜୀବନ ଚନ୍ଦ୍ରକାନ୍ତଙ୍କୁ ଭଡାଦେଇ ସେ ଘରେ ରହୁଥିଲେ । ମା'ଙ୍କ କଥା ଅନୁସାରେ ଆପଣା ମହତ ଆପେ ରଖ୍ରି ।

ପାରଳା ମହାରାଜା ଏହା କରିବା ଦ୍ୱାରା ନିଜର ବଡିମା ବଜାୟ ରଖିଥିଲେ ।

କେହି କେହି ବ୍ୟକ୍ତି ମଧୁବାବୁଙ୍କ ସାହାଯ୍ୟରେ ଧନୀ ହୋଇ ତଥାକଥିତ ବଡ଼ ବଡ଼ ଦେଶପ୍ରେମୀ ଭାବେ ଉଭା ହୋଇଥିଲେ । ମଧୁବାବୁଙ୍କ ବିପଦବେଳକୁ ସେହି କୀର୍ତ୍ତିମାନ ଦେଶପ୍ରେମୀମାନେ ମଧ୍ୟଥିଲେ । ସେମାନଙ୍କ ବିବେକକୁ ମଧ୍ୟ ମଧୁବାବୁଙ୍କ ବିପଦ ସ୍ପର୍ଶ କରିନଥିଲା କି ସାହାଯ୍ୟର ହାତ ବଢ଼ି ନଥିଲା । ଯେଉଁମାନେ ସାମନ୍ତବାଦୀ ବିଳାସବ୍ୟସନରେ ଇଂରେଜୀ ହାକିମଙ୍କର ଆଦର ଯତ୍ନରେ ଅଜସ୍ର ଅର୍ଥ ସୁଅପରି ଖର୍ଚ୍ଚ କରୁଥିଲେ, ସେମାନଙ୍କ ପକ୍ଷରେ ମଧୁବାବୁଙ୍କ ବିପଦ କଥା ଭାବିବା ଆଶା କରିବା ଅସମ୍ଭବ ଥିଲା । ଜୀବନ ସ୍ରୋତରେ ଭାସି ଚାଲିଥିଲା ସମୟରେ ଏହିପରି ତିକ୍ତ ଅନୁଭୂତି ହିଁ ମଧୁବାବୁଙ୍କୁ ଗଭୀର ଆଘାତ ଦେଇଥିଲା ପ୍ରାଣେ ପ୍ରାଣେ ।

କିନ୍ତୁ ଜୀବନରେ କେବେ ସେ କାହାରି ବିରୁଦ୍ଧରେ ଚିନ୍ତା କରି ନାହାଁନ୍ତି କି କାହାରି ବିପକ୍ଷରେ ପଦେ ତୁଣ୍ଡରେ ପ୍ରକାଶ କରି ନାହାଁନ୍ତି । ତେଣୁ ମୁଁ ଭାବୁଛି, କାଳଚକ୍ରର ଘୂର୍ଣ୍ଣି ବାତ୍ୟା ମଧ୍ୟରେ ମଧୁବାବୁଙ୍କର ଅବରୁଦ୍ଧ ତିକ୍ତ ଅନୁଭୂତି ସେଦିନ ଏହି ଗୋଟିଏ ବାକ୍ୟ (ବଡ଼ମାନଙ୍କର ପ୍ରୀତି ବାଲିବନ୍ଧ ସଦୃଶ)ରେ ପ୍ରକାଶ ପାଇଥିଲା ।

ପୂର୍ବ ବିଷୟକୁ ଆସନ୍ତୁ । ଗରିମାମୟ ବ୍ୟକ୍ତି ମାନଙ୍କର ସ୍ମୃତି ରକ୍ଷାର୍ଥେ ଜନ୍ମପୀଠ, କାର୍ଯ୍ୟପୀଠମାନଙ୍କରେ ସ୍ମାରକୀ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ରାଜରାସ୍ତା କଡରେ ମୂର୍ତ୍ତି ପ୍ରତିଷ୍ଠା କରିବା ସହ ପାର୍କ ମାନ ତିଆରି କରି ସେଠାରେ ମୂର୍ତ୍ତି ପ୍ରତିଷ୍ଠା କରାଯାଇଥାଏ । କଟକ ସହର ମଧ୍ୟରେ ତିନୋଟି ବଡ ପାର୍କ ଅଛି । ଗୋଟିଏ କର୍ମବୀର ଗୌରୀଶଙ୍କରଙ୍କ ନାମରେ "ଗୌରୀଶଙ୍କର ପାର୍କ" ଚୌଧୁରୀ ବଜାରରେ । ଅନ୍ୟଟି ଉତ୍କଳମଣି ଗୋପବନ୍ଧୁଙ୍କ ନାମରେ "ଗୋପବନ୍ଧୁ ପାର୍କ" ବକ୍ସିବଜାର ନିକଟରେ। ଖାନ୍‌ନଗର କାଳୀମନ୍ଦିର ନିକଟରେ କାଠଯୋଡି କୂଳରେ ଏବେ ଏକ ଦୀର୍ଘ ପାର୍କ କରାଯାଇଛି ବିଶ୍ୱନାଥ ପଣ୍ଡିତଙ୍କ ନାମରେ । ଏସବୁ ପାର୍କ ବେଶ୍ ବୃହତ ଏବଂ ସୁସଜ୍ଜିତ ଏବଂ ସେଠାରେ ସେହି ପୂଜ୍ୟ ବ୍ୟକ୍ତିମାନଙ୍କର ବଡ ବଡ ମୂର୍ତ୍ତି ପ୍ରତିଷ୍ଠିତ । ମଧୁସୂଦନ ନଗର ନିକଟରେ ମଧୁବାବୁଙ୍କର ଏକ ଛୋଟିଆ ଆବକ୍ଷ ମୂର୍ତ୍ତି ଛୋଟିଆ ସ୍ତମ୍ଭ ଉପରେ ରଖାଯାଇଛି। ସେ ଜାଗାଟି ବେଶ୍ କ୍ଷୁଦ୍ର । ବୋଧହୁଏ ଦୁଇ କି ତିନି ଡେସିମିଲର ହେବ, ତିନିକୋଣିଆ ଜାଗାଟିଏ ତିନି ରାସ୍ତା ମଝିରେ । ସେହି ତିନିକୋଣିଆ ଜାଗାଟିକୁ ନିକଟରେ ଅଳ୍ପ ଉଚ୍ଚ ଗ୍ରୀଲ୍ ଦ୍ୱାରା ଆବଦ୍ଧ କରାଯାଇଛି । କିନ୍ତୁ ତା ମଧ୍ୟରେ ଗଛ ଲତାର ସାଜସଜ୍ଜା ନାହିଁ। ସେଠି ବସିବାକୁ କି ବୁଲିବାକୁ ଜାଗା ନାହିଁ । ତେଣୁ ତାକୁ ପାର୍କ କୁହାଯାଇପାରିବ ନାହିଁ । ସେ ଜାଗାଟି ମଧ୍ୟ କଟକ ସହରର ଗୋଟିଏ ଏକପାଖିଆ କୋଣରେ ଏବଂ ପ୍ରାୟ ଲୋକ ଚଳାଚଳ କରୁନଥିବା ଜାଗାରେ । କଟକ ନଗରର ବିସ୍ତୃତିକରଣ ନିମନ୍ତେ ଏବେ ମର୍କତ ନଗର ତୟାର କରାଯାଇଛି ସରକାରଙ୍କ ଦ୍ୱାରା। ତା ମଧ୍ୟରେ ବିଜୁବାବୁଙ୍କ ଠାରୁ ଆରମ୍ଭ କରି ବିରେନ୍ ମିତ୍ର ଏବଂ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତି ମାନଙ୍କ ନାମରେ ବଡ ବଡ ପାର୍କ କରାଯାଇଛି । କିନ୍ତୁ ମଧୁବାବୁଙ୍କ ନାମରେ ଗୋଟିଏ ପାର୍କ ହୋଇପାରିଲା ନାହିଁ। ମଧୁବାବୁଙ୍କର ଏକ ବିରାଟ ଜାଗା ଇଦ୍‌ଗାହ ପଡିଆ ନାମରେ ଥିଲା । ସେହିଠାରେ "ଉତ୍କଳ ସମ୍ମିଳନୀର" ପ୍ରଥମ ବୈଠକ ବସିଥିଲା । ସେହି ଜାଗାଟିକୁ ଓଡିଶା ଗଠନର ସ୍ମାରକୀ ଭାବେ ସରକାର ଯଦି ରଖିଥାନ୍ତେ, ସେଠାରେ ମଧ୍ୟ ମଧୁବାବୁଙ୍କ ନାମରେ ଏକ ବଡ ପାର୍କ ହୋଇପାରିଥାନ୍ତା । କିନ୍ତୁ ସେ ଜାଗା ଅନ୍ୟ ଲୋକମାନଙ୍କ ବେଦଖଲରେ । ସେ ଜାଗା ମଧ୍ୟରୁ

ଅଛ କିଛି ଜାଗା ଖାଲି ଅଛି । ଅନେକ ଦିନରୁ ଶୁଣାଯାଉଛି, ଉତ୍କଳ ସମ୍ମିଳନୀ ସେଠାରେ ନଅ ମହଲା କୋଠା କରିବେ "ଦ୍ୱିତୀୟ ବାରବାଟି" ଭାବେ । କିନ୍ତୁ ଆଜି ପର୍ଯ୍ୟନ୍ତ କିଛି ହୋଇନାହିଁ । ଏହିଥିରୁ ଦେଖାଯାଉଛି, ସବୁ କାମ ପରି ପାର୍କ ଟିଏ ମଧୁବାବୁଙ୍କ ନାମରେ କରିବାକୁ ସରକାର ମଧ୍ୟ ଆଗ୍ରହୀ ନୁହନ୍ତି ।

ସ୍ମୃତି ପାଇଁ କୌଣସି ରାଜରାସ୍ତାକୁ ବରପୁତ୍ରଙ୍କ ନାମରେ କରାଯାଏ । କଟକର କାଣ୍ଟନମେଣ୍ଟ ରୋଡ ସମ୍ମାନ ଜନକ ରାସ୍ତା । ତାହା ଉପଯୁକ୍ତ ମଧୁବାବୁଙ୍କ ନାମରେ ନାମକରଣ ହେବା; କିନ୍ତୁ ତାହା "ଗୋପବନ୍ଧୁ ମାର୍ଗ" ଭାବେ ନାମିତ । ଦୋଳମୁଣ୍ଡେଇ ଛକରୁ ଛତର ବଜାରକୁ କଂକ୍ରିଟର ଦୀର୍ଘରାସ୍ତା "ମହତାବ ରୋଡ୍" ହୋଇଛି । ମଧୁବାବୁଙ୍କ ଘର ସାମନାରେ ଯାଇଥିବା କଟକ ଚଣ୍ଡୀ ଛକଠାରୁ ବକ୍ସିବଜାର ଛକଯାଏ ରାସ୍ତା "ମିଶନ୍ ରୋଡ୍" ନାମରେ ନାମିତ । ସେହି ରାସ୍ତାକୁ ମଧୁବାବୁଙ୍କ ନାମରେ ନାମିତ କରିବାର ଯଥାର୍ଥତା ଅଛି । କିନ୍ତୁ ସେ ରାସ୍ତା ମଧୁବାବୁଙ୍କ ନାମରେ ନାମିତ କରାଯାଇନାହିଁ । ଗୋପବନ୍ଧୁ ଭବନ ନିକଟରେ ମିଶନ ରୋଡ୍‌ରୁ କ୍ୟାଣ୍ଟନମେଣ୍ଟ ରୋଡକୁ ସଂଯୋଗ କରୁଥିବା ଏକ ଛୋଟ ଅନାମଧେୟ ଗଳି ରାସ୍ତାକୁ "ମଧୁସୁଦନ ମାର୍ଗ" କରାଯାଇଛି ।ଏହା ମଧୁବାବୁଙ୍କ ପ୍ରତି ଅବମାନନା କେବଳ ନୁହେଁ, ଅପମାନ ମଧ୍ୟ ।

ସରକାର କହିଲେ ଖାଲି ରାଜନେତା ବା ମନ୍ତ୍ରୀ ନୁହନ୍ତି; ମନ୍ତ୍ରୀଙ୍କୁ ନୀତି ନିର୍ଦ୍ଧାରଣରେ ସାହାଯ୍ୟ କରୁଥିବା ଏବଂ ନିଷ୍ପତ୍ତିକୁ କାର୍ଯ୍ୟକାରୀ କରୁଥିବା ଅଫିସର୍ ଓ କର୍ମଚାରୀ ମାନେ ମଧ୍ୟ ଅନ୍ତର୍ଭୁକ୍ତ । ଓଡିଶା ରାଜ୍ୟରେ ଆଜିର ଯେଉଁ ଓଡିଆ ଅଫିସର୍‌ମାନେ ଅଛନ୍ତି ଏବଂ ଯେଉଁ ଓ.ଏ.ଏସ୍ କ୍ୟାଡର୍ ଅଛି ସେକଥାକୁ ବିଚାରକୁ ନେଲେ ମଧୁବାବୁଙ୍କୁ ଆଗକୁ ଆଣିବାକୁ ହୁଏ । ଯେତେବେଳେ ବେଙ୍ଗଲ୍ ବିହାର ସଙ୍ଗେ ଓଡିଶା ମିଶି ରହିଥିଲା, ଓଡିଆଙ୍କୁ ଅଫିସର ଶ୍ରେଣୀର "ଡେପୁଟି କଲେକ୍ଟର" କରାଯାଉନଥିଲା । ସେଥିପାଇଁ ମଧୁବାବୁ ସରକାରଙ୍କ ସଙ୍ଗେ ଲାଗି ଲାଗି ଓଡିଶା ପାଇଁ ଏକ ସ୍ୱତନ୍ତ୍ର "ଡେପୁଟି କଲେକ୍ଟର" କ୍ୟାଡର୍ କଲେ । ତାହାପରେ ଓଡିଆ ମାନେ ଡେପୁଟି କଲେକ୍ଟର

ହୋଇ ଅଫିସର ହେଲେ । ତେଣୁ ଓଡିଶା ପ୍ରଦେଶ ଗଠନ ହେବା ସମୟକୁ ଓଡିଆ ମାନେ ଏଠାରେ ଅଫିସର୍ ହୋଇଥିଲେ । ଯଦି ଓଡିଶା ପ୍ରଦେଶ ଗଠିତ ହୋଇନଥାନ୍ତା, ଏବଂ ଓଡିଶା କ୍ୟାଡର୍ ନଥାନ୍ତା; ତେବେ ଓଡିଆମାନେ ଅଫିସର୍ ହୋଇନଥାନ୍ତେ । ଓଡିଆ କ୍ୟାଡର୍ ଥିବାରୁ ଓଡିଶା ପ୍ରଦେଶ ନହୋଇଥିଲେ ମଧ ଅଫିସର ହୋଇପାରିଥାନ୍ତେ । ମଧୁବାବୁଙ୍କର ଅତୀତର ଏ କାର୍ଯ୍ୟକୁ ମନେ ପକାଇ ଅଫିସରମାନେ ତାଙ୍କ ପ୍ରତି କୃତଜ୍ଞତା ଜଣାଇବା କଥା । ସେମାନେ ଯଦି ଚାହାନ୍ତି, ତେବେ ଉତ୍କଳ ଗୌରବଙ୍କର ଅନେକ କିଛି ସ୍ମୃତି ରକ୍ଷା ହୋଇପାରନ୍ତା ସରକାରୀ ସ୍ତରରେ । ମଧୁବାବୁ ଓଡିଆ କ୍ୟାଡର ଅଫିସର ସୃଷ୍ଟି କରାଇଥିଲେ କିନ୍ତୁ ଟ୍ରେନିଂ ପାଇଁ ଓଡିଶା ସରକାର "ଗୋପବନ୍ଧୁ ଇନଷ୍ଟିଚ୍ୟୁଟ ଅଫ ଏକାଡେମୀ ଅଫ ଆଡମିନିଷ୍ଟ୍ରେସନ" କଲେ । ମଧୁବାବୁଙ୍କ ନାମରେ ପରେ ଫାଇନାନ୍‌ସ ଅଫିସରଙ୍କର ଏକାଡେମୀ ହେଲା । ଓଲଟା ନାମକରଣ କରିଥିଲେ ସୁନ୍ଦର ହୋଇଥାନ୍ତା । ମଧୁବାବୁ ଓଡିଶା ପୋଲିସ କ୍ୟାଡର୍ ସୃଷ୍ଟି କରାଇଥିଲେ । ଓଡିଶା ପୋଲିସ୍ ଟ୍ରେନିଂ କଲେଜ ତାଙ୍କ ନାମରେ ନାମିତ ହୋଇପାରିଥାନ୍ତା । କିନ୍ତୁ ବିଜୁବାବୁଙ୍କ ନାମରେ ହେଲା ।

ମଧୁବାବୁ ଓଡିଶାର ଉନ୍ନତି ନିମନ୍ତେ ଶିକ୍ଷା, ଶିଳ୍ପ, କୁଟୀର ଶିଳ୍ପ ଆଦି ବହୁ ଯୋଜନା କାର୍ଯ୍ୟକାରୀ କରିଥିଲେ । କିନ୍ତୁ ଆଜି ମଧୁବାବୁଙ୍କ ନାମରେ ମଧୁସୂଦନ ଲ' କଲେଜ୍ ଛଡା କୌଣସି ବଡ ବଡ ଶିକ୍ଷାକେନ୍ଦ୍ର ତାଙ୍କ ନାମରେ ନାମକରଣ କରାଯାଇନାହିଁ । ବିରାଟ ଗ୍ରାମୀଣ ଯୋଜନା ଗୋପବନ୍ଧୁଙ୍କ ନାମରେ "ଗୋପବନ୍ଧୁ ଗ୍ରାମୀଣ ଯୋଜନା" ଆଗ କରାଗଲା । ବହୁଦିନ ପରେ ଏକ "ମଧୁସୂଦନ ପେନସନ ଯୋଜନା" ବୟସ୍କ ମାନଙ୍କ ନିମନ୍ତେ ନାମକୁ ମାତ୍ର କରାଯାଇଛି । ନୂତନ ଓଡିଶା ରାଜ୍ୟ ଗଠନକାରୀ ଏବଂ ନୂତନ ଓଡିଆ ଜାତିର ଜନକଙ୍କୁ ଆଜି କେବଳ ଜୀବନର ଶେଷରେ ଉପନୀତ ଓଡିଆମାନେ ମନେପକାଇବେ, ଯୁବକ ମାନେ ନୁହଁ । ଏହା ଏକ ବିଡମ୍ବନା ଛଡା କଣ ହୋଇପାରେ ?

ଅନେକ ଦିନ ତଳେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସତ୍ୟବାଦୀ ଚେୟାର (ବା ଗୋପବନ୍ଧୁ ଚେୟାର୍) ଏବଂ ମଧୁସୂଦନଙ୍କ ନାମରେ ମଧୁବାବୁ ଚେୟାର୍

- ଏପରି ଦୁଇଟି ଚେୟାର ଖୋଲାଯାଇଥିଲା । ସତ୍ୟବାଦୀ ଚେୟାର୍‌ରେ ଜଣେ ପ୍ରଫେସରଙ୍କୁ ନିଯୁକ୍ତି ଦିଆଯାଇଥିଲା । କିନ୍ତୁ ମଧୁସୂଦନ ଚେୟାର୍‌ରେ କାହାକୁ ନିଯୁକ୍ତ କରାଯାଇନଥିଲା । ସତ୍ୟବାଦୀ ଚେୟାରର ପ୍ରଫେସର ଅବସର ନେଲା ପରେ ଦୁଇଟି ଯାକ ଚେୟାର୍ ବନ୍ଦ ହୋଇଯାଇଥିଲା । ନିକଟରେ ବିଶ୍ୱବିଦ୍ୟାଳୟର କୁଳପତି ଦୁଇଟି ଯାକ ଚେୟାର୍ ପୁନଃ ଖୋଲାଯିବା ନିମନ୍ତେ ସରକାରଙ୍କୁ ଲେଖିଲେ । ସତ୍ୟବାଦୀ ଚେୟାର ଖୋଲିବାକୁ ଅନୁମତି ଆସିଲା। କିନ୍ତୁ ମଧୁବାବୁଙ୍କ ଚେୟାର୍ ଖୋଲାଯିବାକୁ ଅନୁମତି ଦିଆଗଲା ନାହିଁ, ଯାହା ପ୍ରଥମେ ଖୋଲାଯିବା କଥା । ଏବେ ବି ବେଳ ଅଛି, ରାଜ୍ୟ ସରକାର ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗରେ ମଧୁବାବୁ ଚେୟାର୍ ଖୋଲନ୍ତୁ।

ଏତ ଗଲା ମଧୁବାବୁଙ୍କ ସ୍ମୃତିରକ୍ଷା ନିମନ୍ତେ କେତେକ କ୍ଷେତ୍ରରେ ସରକାରଙ୍କ ଇଚ୍ଛାକୃତ ପ୍ରତ୍ୟାଖ୍ୟାନ, ଅନାଦାର ଏବଂ ଅବଜ୍ଞା । ମଧୁବାବୁଙ୍କ ନିଃସ୍ୱାର୍ଥପର ବଳିଦାନରେ ଗଠନ କରାଯାଇଥିବା ଓଡିଶା ରାଜ୍ୟକୁ ନିଜର ସ୍ୱାର୍ଥ ପାଇଁ କିପରି କଂଗ୍ରେସ ନେତା ମାନେ ତାହାର ଅଙ୍ଗଛେଦନ କରିବାକୁ କୁଣ୍ଠିତ ହୋଇନଥିଲେ ତାହା ଲକ୍ଷ୍ୟ କରିବା କଥା । ଓଡିଶାର ସବୁ ଗଡଜାତ ଅଞ୍ଚଳର ରାଜାମାନଙ୍କ ସହ ଷଢେଇକଳା, ଖରସୁଆଁର ରାଜାଦ୍ୱୟଙ୍କୁ ମଧ୍ୟ ମଧୁବାବୁ ଓଡିଶା ପ୍ରଦେଶ ଗଠନ କରିବା କାର୍ଯ୍ୟଧାରାରେ ଉତ୍କଳ ସମ୍ମିଳନୀ ସହ ଜଡିତ କରି ରଖିଥିଲେ। ପରେ "ଉତ୍କଳ ପ୍ରଦେଶ କଂଗ୍ରେସ କମିଟି" ଗଠିତ ହେବା ସମୟରେ ଓଡିଶା ଏବଂ ଓଡିଶାର ସମସ୍ତ ଗଡଜାତ ଅଞ୍ଚଳ ସହ ସିଂହଭୂମି ଜିଲ୍ଲାକୁ ମଧ୍ୟ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଅନ୍ତଃର୍ଭୁକ୍ତ କରାଯାଇଥିଲା। କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ଚକ୍ରାନ୍ତକରି ରାଜେନ୍ଦ୍ର ପ୍ରସାଦ ଓ ଶ୍ରୀକୃଷ୍ଣ ସିହ୍ନା ସିଂହଭୂମି ଜିଲାକୁ ବିହାରରେ ମିଶାଇଦେଲେ ରାଜ୍ୟ ପୁନର୍ଗଠନ ପୂର୍ବରୁ। ରାଜ୍ୟ ପୁର୍ନଗଠନ ସମୟରେ ଷଢେଇକଳା ଖରସୁଆଁ ଓଡିଶାରେ ନ ମିଶିବାରୁ ଓଡିଶାରେ ଘୋର ଅସନ୍ତୋଷ ଦେଖାଦେଇ ଆନ୍ଦୋଳନ ହେଲା । ମଧୁବାବୁଙ୍କ ଫଟୋ ପୋଡୁଥିବା ନବକୃଷ୍ଣ ଚୌଧୁରୀ ୧୯୫୬

ମସିହାରେ ମୁଖ୍ୟମନ୍ତ୍ରୀ ଗାଦି ଉପଭୋଗ କରୁଥିଲେ । ଓଡିଶାର ଜନସାଧାରଣ, ଯୁବକ ଏବଂ ଛାତ୍ରମାନେ ଷଢେଇକଳା ଖରସୁଆଁ ପାଇଁ ଘୋର ଆନ୍ଦୋଳନ କରିବାରୁ ନବବାବୁ ଓଡିଆଙ୍କ ଦାବି ଜଣାଇବାକୁ ଦିଲ୍ଲୀ ଗଲେ। କିନ୍ତୁ ସେଠାରୁ ଭୁରୁଡି ଖାଇ ଫେରିଆସି ଆନ୍ଦୋଳନକୁ ବନ୍ଧୁକ ମୁନରେ ଦମନ କଲେ ଏବଂ ବେଙ୍ଗ ପାଣିଆ, ସୁନିଲ ଦେ, ହରିହର ପ୍ରଭୃତି ଯୁବକମାନେ ଶହୀଦ ହେଲେ । ଓଡିଶା ପ୍ରତି ଅନ୍ୟାୟ କରାଯାଉଥିବାରୁ ରାଜ୍ୟ ପୁନର୍ଗଠନ କମିଟିର ଚେୟାରମ୍ୟାନ୍ ଜଷ୍ଟିସ ଫଜଲ ଅଲ୍ଲି ସାହେବ, ସେହି ଆଲୋଚନାରେ ଅଂଶ ଗ୍ରହଣ ନକରି ଅନୁପସ୍ଥିତ ରହିଲେ । ଅବଶ୍ୟ ଅନ୍ୟ ଦୁଇ ଜଣ ସଭ୍ୟଙ୍କ ନିଷ୍ପତ୍ତି ଚେୟାରମେନଙ୍କ ଅନୁପସ୍ଥିତିରେ ଆଇନସମ୍ମତ କି ନୁହେଁ ବିଚାର୍ଯ୍ୟ । ତେବେ ଫଜଲ ଅଲ୍ଲି ସାହେବ ଅନ୍ୟାୟ ବିରୁଦ୍ଧରେ ଠିଆ ହେଲେ ତାଙ୍କର କିଛି ସ୍ୱାର୍ଥ ନଥାଇ। କିନ୍ତୁ ନୀତିନିଷ୍ଠ ନବବାବୁ ନିଜ ରାଜ୍ୟକୁ ଖଣ୍ଡିତ ନହେବା ଦାବୀରେ ମନ୍ତ୍ରୀ ଗାଦିରୁ ଇସ୍ତଫା ଦେଇପାରିଲେ ନାହିଁ କି ମଧୁବାବୁଙ୍କ ପରି କଂଗ୍ରେସ ତ୍ୟାଗ କରିପାରିଲେ ନାହିଁ।

ଏହି ଅବସରରେ ଯେଉଁ କଂଗ୍ରେସ ନେତାମାନେ ମଧୁବାବୁଙ୍କ ଦେଶପ୍ରୀତି ପ୍ରତି ପ୍ରଶ୍ନବାଚୀ ସୃଷ୍ଟି କରି ତାଙ୍କ ଫଟୋ ପୋଡୁଥିଲେ, ସେମାନଙ୍କ ଦେଶପ୍ରୀତି ବିଷୟରେ ଦିପଦ ନଲେଖି ରହିପାରୁ ନାହିଁ । ୧୯୪୭ ମସିହାରେ ଓଡିଶାର ଗଡଜାତଗୁଡିକ ଓଡିଶା ସହ ମିଶିବାର ପ୍ରଶ୍ନ ଉଠିଲା । ସେ ସମୟରେ ମୟୁରଭଞ୍ଜର ପୂର୍ବତନ ଦେଓ୍ୱାନ କେ.ସି ନିୟୋଗୀ ଭାରତ ସରକାରଙ୍କର ଜଣେ ମନ୍ତ୍ରୀ ଥିଲେ । ସେ ଗୁପ୍ତରେ ମୟୁରଭଞ୍ଜ ରାଜାଙ୍କୁ ପରାମର୍ଶ ଦେଲେ - ରାଜ୍ୟରେ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା କରି ଲୋକ ପ୍ରତିନିଧି ମାନଙ୍କୁ କ୍ଷମତା ହସ୍ତାନ୍ତର କରିଦେବାକୁ ଏବଂ ସେ ମଧ ତାହା କଲେ। ସେଥି ଯୋଗୁଁ ୧୯୪୮ ମସିହାରେ ଓଡିଶା ଗଡଜାତମାନେ ଓଡିଶାରେ ମିଶିବା ସମୟରେ ମୟୁରଭଞ୍ଜ ମିଶି ନଥିଲା । ଷଢେଇକଳା ଓ ଖରସୁଆଁ ଓଡିଶା ସହ ସଂଯୁକ୍ତ ହୋଇ ଚଳପ୍ରଚଳ ହେବା ନିମନ୍ତେ ରାସ୍ତା ନଥିବା କାରଣ ଦେଖାଇ ଖରସୁଆଁ ଓ ଷଢେଇକଳାକୁ "ଅସ୍ଥାୟୀ" ଭାବେ ବିହାର ସହ ସାମିଲ

କରାଯାଇଥିଲା । କେ.ସି. ନିୟୋଗୀଙ୍କ ମାଧ୍ୟମରେ ପଡୋଶୀ ରାଜ୍ୟର ପ୍ରଭାବଶାଳୀ ରାଜନେତାଙ୍କର ଏହା ଏକ କୁଚକ୍ରାନ୍ତ ଥିଲା ଏଥିରେ ସଂନ୍ଦେହ ନାହିଁ । କିନ୍ତୁ ୧୯୪୯ ମସିହାରେ ମୟୁରଭଞ୍ଜ ଓଡିଶାରେ ମିଶିଯିବା ପରେ କୌଣସି କାରଣ ନଥାଇ ଭାରତ ସରକାର ଷଢେଇକଳା ଖରସୁଆଁକୁ "ସ୍ଥାୟୀ" ଭାବେ ବିହାର ସହ ମିଶାଇ ଦେଲେ । ଏହା ବିପକ୍ଷରେ ଓଡିଶାର କଂଗ୍ରେସ ବାଲା ତ ପ୍ରତିବାଦ କଲେ ନାହିଁ ; ଷଢେଇକଳା ଓ ଖରସୁଆଁ ରାଜା ସାହେବମାନେ ଗୃହମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ନିକଟରେ ପ୍ରତିବାଦ କଲାରୁ ସେ ଡ଼: ରାଜେନ୍ଦ୍ର ପ୍ରସାଦଙ୍କୁ ଦେଖା କରିବାକୁ କହିଲେ । ଡ଼: ରାଜେନ୍ଦ୍ର ପ୍ରସାଦ କେବେ ବି ଦେଖା ଦେଲେ ନାହିଁ । ଏହା ପୂର୍ବ ନିର୍ଦ୍ଧାରିତ ଏକ ଚକ୍ରାନ୍ତ; ଏହି ଚକ୍ରାନ୍ତରେ ଓଡିଶା ନେତା ଯେ ସହଯୋଗୀ ଥିଲେ, ଏଥିରେ ସନ୍ଦେହ ନାହିଁ । ତାହା ପରେ ଜଣା ପଡିଲା । ଓଡିଶା ପ୍ରଦେଶ ଚାହୁଁନଥିବା ଏବଂ ମଧୁବାବୁଙ୍କ ଫଟୋ ପୋଡୁଥିବା ଡ଼: ହରେକୃଷ୍ଣ ମହତାବ ମଧୁବାବୁଙ୍କ ଗଠିତ ଓଡିଶା ରାଜ୍ୟର ମୁଖ୍ୟମନ୍ତ୍ରୀ ପଦ ଉପଭୋଗ କରି ମଧ୍ୟ ନିଜ ସ୍ୱାର୍ଥ ନିମନ୍ତେ ଷଢେଇକଳା ଖରସୁଆଁକୁ ବିହାରକୁ ଦାନ କରିଦେଲେ "ଉତ୍କଳ କେଶରୀ" ଭାବେ । ଅଥଚ ଆଶା କରାଯାଇଥିଲା, ସେ ଉଚ୍ଚପଦବୀରେ ଥାଇ ଓଡିଆ ଭାଷାଭାଷୀ ଅଞ୍ଚଳ ଅନ୍ୟ ରାଜ୍ୟରୁ ଆଣି ଓଡିଶାରେ ମିଶାଇବେ ବୋଲି । ରାଜ୍ୟ ପୁନର୍ଗଠନ ସମୟରେ ରାଜ୍ୟରେ ଘୋର ଆନ୍ଦୋଳନ ହେବାରୁ ଶେଷରେ ବାଧ୍ୟହୋଇ କେନ୍ଦ୍ରସରକାର ବିହାର ଓଡିଶା ବିବାଦ ସମାଧାନ କରିବା ନିମନ୍ତେ ବମ୍ବେ ହାଇକୋର୍ଟର ବିଚାରପତି ବାଭଦେକରଙ୍କୁ ନେଇ ଏକ ଟ୍ରିବୁନାଲ ଗଠନ କଲେ । କିନ୍ତୁ ଶ୍ରୀକୃଷ୍ଣ ସିହ୍ନାଙ୍କ ସହ ଡ଼: ମହତାବ ଏକ ଗୁପ୍ତ ଚୁକ୍ତି କରିଥିଲେ । ତାହା ଶ୍ରୀକୃଷ୍ଣ ସିହ୍ନା ବିହାର୍‌ର ମୁଖ୍ୟମନ୍ତ୍ରୀ ପଦରେ ଥାଇ ତା.୦୬.୧୨.୫୫ ତାରିଖରେ ବିହାର ବିଧାନସଭାରେ ଉପସ୍ଥାପନ କରିଥିଲେ । ସେଥିରେ ଏହିପରି ଲେଖାଥିଲା "XXX Joint Statement was issued on the 8th April 1949, which was signed by Sri Harekhrishna Mohatab, who was the premier of Orissa, the premiers of the C.P. and West Bengal and myself.

"Here is the relevant extract from the statement. «XXX In particular premiers of Bihar, Central Province, West Bengal and Orissa desire to State that they have accepted the decision of Govt, of India in regard to present distribution of Native States belonging to Eastern States Agency and there is no controversy between them on that account." (ପଥ ଓ ପୃଥିବୀ- ପୃ- ୨୦୧-୨୦୨ ) । ଏହି "ପୂର୍ବାଞ୍ଚଳ ଗଡଜାତ ୟୁନିୟନ" କେବେବି ଗଠନ କରା ହୋଇନଥିଲା । ଏହା ସତ୍ୟର ଏକ ଅପଳାପ ମାତ୍ର । ଏହାଦ୍ୱାରା ଶ୍ରୀକୃଷ୍ଣ ସିହ୍ନା, ମହତାବଙ୍କ ଦ୍ୱାରା 'ଲେଖାଇ ନେଲେ ଯେ, ଷଢେଇକଳା ଖରସୁଆଁ ଓଡିଶାରେ ନଥିଲା । ସୃଷ୍ଟି ନହୋଇଥିବା "ପୂର୍ବାଞ୍ଚଳ ଗଡଜାତ ଏଜେନ୍ସି"ରେ ଥିଲା । ଏହିପରି ଭାବେ ଡ଼: ହରେକୃଷ୍ଣ ମହତାବ ନିଜ ସ୍ୱାର୍ଥରକ୍ଷା କରିବା ଲକ୍ଷ୍ୟରେ ରାଜେନ୍ଦ୍ର ପ୍ରସାଦଙ୍କୁ ଖୁସୀ କରିବାକୁ ଏହା ନିଶ୍ଚୟ କଲେ । ଏହାଦ୍ୱାରା ବାଭେଦକର ଟ୍ରିବ୍ୟୁନାଲଙ୍କର ଜନ୍ମ ହେବା ପୂର୍ବରୁ ମୃତ୍ୟୁ ହୋଇଗଲା। ଡ଼ ହରେକୃଷ୍ଣ ମହତାବ ବାବୁ, ମଧୁବାବୁଙ୍କ ନିଜ ମାତୃଭୂମି ପାଇଁ ନିଃସ୍ୱାର୍ଥପର ଆତ୍ମବଳିଦାନର ଯଜ୍ଞରେ ନିଜ ସ୍ୱାର୍ଥ ପାଇଁ ପୂର୍ଣ୍ଣାହୁତି ଦେଇଦେଲେ ଉତ୍କଳ କେଶରୀ ହୋଇ । କିନ୍ତୁ ଶେଷରେ ମହତାବ ବାବୁଙ୍କୁ କଂଗ୍ରେସ ଛାଡିବାକୁ ପଡିଥିଲା । ମଧୁବାବୁ ଓଡିଶା ପ୍ରଦେଶ ଗଠନ କରିବାକୁ କଂଗ୍ରେସ ଛାଡିଥିଲେ। କିନ୍ତୁ ମହତାବ ବାବୁ ଗଠିତ ଓଡିଶାକୁ ଖଣ୍ଡିତ କରି କଂଗ୍ରେସ ଛାଡିଲେ ।

ସୁରେନ୍ଦ୍ର ମହାନ୍ତିଙ୍କ ଉକ୍ତି : "୧୯୪୯ ମସିହାରେ ଅନ୍ୟାୟ ଭାବେ ଷଢେଇକଳା ଖରସୁଆଁକୁ ବିହାର ସଂଗେ ମିଶାଇ ଦେଲା ପରେ ଓଡିଶାର କଂଗ୍ରେସ ବାଲା ମାନେ କେବେ ସ୍ୱର ଉତ୍ତୋଳନ କରିନଥିଲେ। କିନ୍ତୁ ଶତ ଅତ୍ୟାଚାର ନିଷ୍ପେଷଣ ସତ୍ତ୍ୱେ ଷଢେଇକଳା ଖରସୁଆଁର ଲୋକେ ଓ ଓଡିଶାର ଅନ୍ୟମାନେ ତା ବିପକ୍ଷରେ ଆନ୍ଦୋଳନ ଜାରି ରଖିଥିଲେ ।

"ପାର୍ଲାମେଣ୍ଟରେ କଂଗ୍ରେସ ବ୍ୟତୀତ ଓଡିଶାର ଅନ୍ୟ ସାଂସଦ ମାନେ ବାରମ୍ବାର ଏହା ଉପରେ ଆଲୋଚନା ଜାରି ରଖିଥିଲେ । ଏହି ପରିସ୍ଥିତିରେ ୧୯୫୫ ମସିହାରେ ଥରେ ସୁରେନ୍ଦ୍ର ମହାନ୍ତିଙ୍କର ଉତ୍ତରରେ ତତ୍କାଳୀନ ସ୍ୱରାଷ୍ଟ୍ର ମନ୍ତ୍ରୀ ଡ଼: କୈଳାସ ନାଥ କାଟ୍‌ଜୁ ଏଥିପାଇଁ ସମ୍ବିଧାନର

ତୃତୀୟ ଧାରା ଅନୁସାରେ ଓଡିଶା ସରକାର କାର୍ଯ୍ୟାନୁଷ୍ଠାନ କରିବା ଉଚିତ ବୋଲି କହିଲେ । ଏ ବିଷୟ ଯଥାବିଧି ଓଡିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଜଣାଇ ଦିଆ ଯାଇଥିଲା । ମାତ୍ର ଓଡିଶା ସରକାର ସମ୍ବିଧାନର ତୃତୀୟ ଧାରା ଅନୁସାରେ ସୁଦ୍ଧା କୌଣସି ଦାବି ଉଠାଇ ନଥିଲେ । ଏ ସଂକ୍ରାନ୍ତରେ ଏହା ଉଲ୍ଲେଖ ଯୋଗ୍ୟ ଯେ, ରାଜସ୍ଥାନ ସରକାର, ବମ୍ବେ ପ୍ରଦେଶ ସହ ମିଶିଥିବା ମାଉଣ୍ଟ ଆବୁର ରାଜସ୍ଥାନରେ ପୁନଃମିଶ୍ରଣ ଦାବି କରି, ଏହି ତୃତୀୟ ଧାରା ଅନୁସାରେ ଭାରତ ସରକାରଙ୍କୁ ଆବେଦନ କରିଥିଲେ । ଏହା ଫଳରେ ମାଉଣ୍ଟଆବୁ ଉପରେ ରାଜସ୍ଥାନର ଦାବି କିପରି ସୁଦୃଢ ଓ ଅକାଟ୍ୟ ହୋଇଗଲା ତାହା ରାଜ୍ୟ ପୁନର୍ଗଠନ କମିଶନ ନିଜ ରିପୋର୍ଟରେ (୫୦୫ ଅନୁଛେଦ ପୃ-୧୩୭)ରେ ଉଲ୍ଲେଖ କରିଛନ୍ତି । କିନ୍ତୁ ଓଡିଶାର କଂଗ୍ରେସ ନେତୃବୃନ୍ଦ ଏ ବ୍ୟାପାରରେ ସମ୍ପୂର୍ଣ୍ଣ ଉଦାସୀନ ରହିଲେ । "(ପଥ ଓ ପୃଥିବୀ : ସୁରେନ୍ଦ୍ର ମହାନ୍ତି, ପୃ - ୨୦୯)" । ଆଉ ଦୁଇ ଜଣ କଂଗ୍ରେସ ନେତା ଯେଉଁ ମାନଙ୍କର ଅହମିକା ଏବଂ ସ୍ୱାର୍ଥ ରକ୍ଷାର୍ଥେ ଓଡିଶା ସ୍ୱାର୍ଥ ବଳି ପଡିଲା ସେ ବିଷୟରେ ଦିପଦ ଲେଖୁଛି ।

ସୁରେନ୍ଦ୍ର ମହାନ୍ତି : "ରାଜ୍ୟ ପୁନର୍ଗଠନ କମିଶନର ନିଯୁକ୍ତି ଘୋଷଣା ପାଇଲା । ଭାଷା ସୂତ୍ରରେ ବିଭିନ୍ନ ପ୍ରଦେଶ ଗଠନ କରିବା ନିମନ୍ତେ ଓଡିଶାର ସମସ୍ତ ବିଚ୍ଛିନ୍ନାଞ୍ଚଳ ସମେତ ଷଢେଇକଳା ଖରସୁଆଁ ପ୍ରଶ୍ନର ଯଥାର୍ଥ ନ୍ୟାୟ ସମ୍ମତ ନିଷ୍ପତ୍ତି ମିଳିବା ଆଶା ଜାଗ୍ରତ ହେଲା । ସେଥିପାଇଁ ପ୍ରୟୋଜନ ଥିଲା ଓଡିଶାର ସର୍ବଦଳୀୟ ଉଦ୍ୟମ ଓ ସେଥିରେ ଓଡିଶା ସରକାରଙ୍କର ଅକୁଣ୍ଠ ସହଯୋଗ । ଏହି ଉଦ୍ଦେଶ୍ୟରେ ସେ ସମୟର ଉତ୍କଳ ସମ୍ମିଳନୀର ସଭାପତି ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ହରେକୃଷ୍ଣ ମହତାବଙ୍କୁ ଏକ ପତ୍ର ମଧ୍ୟ ଲେଖିଲେ । ମାତ୍ର ମହତାବ ବାବୁ ତାଙ୍କୁ ୧୫.୦୧.୫୫ ତାରିଖରେ ଏକ ପତ୍ରରେ, ରାଧାନାଥ ବାବୁ(ରଥ) ଏଥିପାଇଁ ରାଜି ନୁହଁନ୍ତି ବୋଲି ଲେଖିଲେ । ସେହି ପତ୍ରର କିୟଦଂଶ ନିମ୍ନରେ ଉଦ୍ଧୃତ ହେଲା :- "XXX In the mean while I have discussed the matter with Sri Biswanath Das and Sri Radha nath Rath. XXX As it appears to me co-ordinated action for some reason or other does not appear to be possible. Sri Biswanath

Das, yesterday in the working committee pleaded helpnessness. From the discussion I had with Sri Radhanath Rath it appears that he thinks he can manage without the assistance of non official agencies".

"XXX ସେତେବେଳେ ରାଧାନାଥ ବାବୁ ନବକୃଷ୍ଣ ଚୌଧୁରୀ ମନ୍ତ୍ରୀ ମଣ୍ଡଳର ଜଣେ ପ୍ରଭାବଶାଳୀ ମନ୍ତ୍ରୀ । ଏ ବ୍ୟାପାରରେ ସେ ଅନ୍ୟ କାହାକୁ ଦଖଲ ଦେବା ସପକ୍ଷରେ ନଥିଲେ । ସେ ଭାବୁଥିଲେ, ଯଦି ତାଙ୍କର ଏକକ ଉଦ୍ୟମ ଫଳରେ ଷଢେଇକଳା ଖରସୁଆଁ ଓ ସିଂହଭୂମି ଓଡିଶାକୁ ଫେରିଆସେ, ତା ହେଲେ ସେ କୃତି ଏକାନ୍ତ ଭାବରେ ହେବ ତାଙ୍କ ନିଜର । କିନ୍ତୁ ଏ 'କବିରାଜୀ ବଟୁଆ ନୀତି' ର ଫଳ ହେଲା ବିପରୀତ । ସେତେବେଳେ ଓଡିଶା ସରକାରଙ୍କର ହୋମ୍ ଡିପାର୍ଟମେଣ୍ଟରେ ବାଉଣ୍ଡରୀ ସେକସନ୍ ନାମରେ ଗୋଟିଏ ନୂଆ ସେକସନ୍ ଖୋଲାଯାଇ ସେଥିରେ ବହୁ ଅଫିସରଙ୍କୁ ରଖାଯାଇଥିଲା ଏବଂ ଏହି ସେକସନ ଜରିଆରେ ସୀମା- ପ୍ରଶ୍ନ ସମ୍ପର୍କିତ ବହୁ ତଥ୍ୟ ସଂଗୃହୀତ ହେଉଥିଲା । ମାତ୍ର ସେ ସବୁ ତଥ୍ୟ ଦିବାଲୋକ ଦେଖିପାରିଲା ନାହିଁ । ସବୁ ରହିଗଲା 'କବିରାଜୀ ବଟୁଆ' ଭିତରେ । ଏପରିକି ସୀମା କମିଶନଙ୍କ ଠାରେ ଓଡିଶା ସରକାର ଦାଖଲ କରିଥିବା ସ୍ମାରକ ପତ୍ର ସୁଦ୍ଧା ଓଡିଶା ଏମ୍.ପି ଓ ଏମ୍ ଏଲ.ଏ ମାନଙ୍କ ଚକ୍ଷୁ ଅନ୍ତରାଳରେ ଆତ୍ମଗୋପନ କଲା । କଥାରେ ଅଛି :- କହିଲେ କୁଳ କୁଟୁମ୍ବକୁ ଲାଜ, ନକହିଲେ କୁଳ ଭାସି ଯାଉଛି । ବହୁଦିନ ପରେ, ପାର୍ଲାମେଣ୍ଟରେ ରାଜ୍ୟ ପୁନର୍ଗଠନ ବିଲ ଆଲୋଚିତ ହେବା ପୂର୍ବରୁ ଦିଲ୍ଲୀରେ ସବୁ ଏମ୍.ପିଙ୍କ ମଧ୍ୟରେ ଓଡିଶା ସରକାରଙ୍କ ସେହି ମୁଦ୍ରିତ ସ୍ମାରକ ପତ୍ରରୁ ଗଦାଏ ବିତରିତ ହେବା ପାଇଁ ଉଡାଜାହାଜରେ ଆସିଲା । ବିତରଣର ସୁବିଧା ପାଇଁ ଏହାକୁ ସେତେବେଳେ କେନ୍ଦ୍ରରେ ଥିବା ଓଡିଶାର ଉପମନ୍ତ୍ରୀ ନିତ୍ୟାନନ୍ଦ କାନୁନଗୋଙ୍କ ଘରେ ରଖାଯିବା ପାଇଁ ପ୍ରସ୍ତାବ ହେଲା । ମାତ୍ର ସ୍ମାରକ ପତ୍ର ଦେଖି ସେ ସବୁ ତାଙ୍କ ଘରେ ରହିପାରିବ ନାହିଁ ବୋଲି ସେ ବିକଳ ଅନୁରୋଧ କଲେ । ଅଗତ୍ୟା ସେସବୁ ଶ୍ରୀ ସାରଙ୍ଗଧର ଦାସ, ଏମ୍.ପିଙ୍କ ବାସଭବନରେ ପଡିପଡି ନଷ୍ଟ ହେଲା" (ପଥ ଓ ପୃଥିବୀ ସୀମା ଆନ୍ଦୋଳନ ପରିଛେଦ,ପୃ- ୨୧୦-୨୧୧)"।

ଅଥଚ ସାରଙ୍ଗଧର ଦାସଙ୍କର ଢେଙ୍କାନାଳରୁ ପଳାଇ ଆସି ବିଦେଶ ଯାଇ ଶିକ୍ଷା ଲାଭ କରିବାରେ ମଧୁବାବୁଙ୍କର ସାହାଯ୍ୟ ସହଯୋଗ ଅସୀମ ଥିଲା । ମଧୁବାବୁ ଆଶା କରିଥିଲେ ଭବିଷ୍ୟତରେ ସେ ଓଡିଶାର ବହୁତ ଉପକାର କରିବେ ।

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ନିଜର ଏକକ କ୍ଷମତା ବଳରେ ଓଡିଶାର ବିଛିନ୍ନାଞ୍ଚଳ ଓ ଷଢେଇକଳା -ଖରସୁଆଁକୁ ଓଡିଶାରେ ମିଶ୍ରଣ କରାଇ ରାଧାନାଥ ବାବୁ ସମସ୍ତ ମର୍ଯ୍ୟାଦା ଓ ଗର୍ବର ଅଧିକାରୀ ନିଜେ ହିଁ ଏକା ହେବା - ଏପରି ସ୍ୱାର୍ଥପର ମାନସିକତା ଯୋଗୁଁ ଓଡିଶା ସବୁ ହରାଇଲା । କାଳେ ରାଜେନ୍ଦ୍ର ପ୍ରସାଦଙ୍କ କୋପରେ ତାଙ୍କର ମନ୍ତ୍ରୀପଦ ଚାଲିଯିବା ଆଶଙ୍କାରେ ନିତ୍ୟାନନ୍ଦ ବାବୁ ସ୍ମାରକ ପତ୍ରକୁ ଘରେ ରଖିବାକୁ ସୁଦ୍ଧା ବାରଣ କରିଥିଲେ। ଏହା କଂଗ୍ରେସ ନେତାମାନଙ୍କର ନିଃସ୍ୱାର୍ଥପର ଦେଶ ସେବାର ନିଦର୍ଶନ ! ଅଥଚ ସେହିମାନେ ମଧୁବାବୁଙ୍କ ଫଟୋ ପୋଡୁଥିଲେ ଏବଂ ତାଙ୍କର ସ୍ମୃତି ବିଲୁପ୍ତ କରିବାକୁ ଆବଶ୍ୟକୀୟ କାଗଜ ପତ୍ର ନେଇ ଯାଇ ନଷ୍ଟ କରିଦେଇଥିଲେ ।

ଶେଷରେ ଦୁଃଖ ହୁଏ ପ୍ରକାଶ କରିବାକୁ ଯେ, ସର୍ବତ୍ୟାଗୀ ଶ୍ରୀ ସାରଙ୍ଗଧର ଦାସ ନିଜ ଘରେ ଥିବା ସ୍ମାରକ ପତ୍ର ଗୁଡିକୁ ମୁଷ୍ଟିମେୟ କେଇଜଣ ଓଡିଶାର ଏମ୍.ପି ମାନଙ୍କୁ ନିଜେ ବିତରଣ କରି ନଦେଇ ସେ ଗୁଡିକୁ ନଷ୍ଟ କରିଦେଲେ ଏବଂ ନିଜେ ମଧ୍ୟ ସେ ବିଷୟରେ କାର୍ଯ୍ୟାନୁଷ୍ଠାନ କଲେ ନାହିଁ ।

ଏହି ଅବସରରେ କଂଗ୍ରେସର ତୁଙ୍ଗ କର୍ମକର୍ତ୍ତା ମାନେ କିପରି ନୀଚ ନୀତିର କାର୍ଯ୍ୟ କରିଥାନ୍ତି ସେ ବିଷୟରେ ଗୋଟିଏ ଘଟଣା ବିଷୟ ଉଲ୍ଲେଖ କରିବାକୁ ଇଚ୍ଛା କରୁଛି । ଡ଼: ରାଜେନ୍ଦ୍ର ପ୍ରସାଦ ଜଣେ ବହୁଜ୍ଞାନୀ ଏବଂ ଭାରତର ଜଣେ ବିଶିଷ୍ଟ ଜାତୀୟ ନେତା ଭାବେ ଗଣ୍ୟ । ସେ ସାମ୍ବିଧାନିକ ସଭାର ଅଧ୍ୟକ୍ଷ ହୋଇଥିଲେ। ଭାରତ ସ୍ୱାଧୀନତା ଲାଭ କଲା ପରେ ଭାରତର ପ୍ରଥମ ରାଷ୍ଟ୍ରପତି ହୋଇଥିଲେ । କିନ୍ତୁ ଅନ୍ତର ମଧ୍ୟରେ ସେ କିପରି ଜାତୀୟ ନେତାର ବିପରୀତ ଧର୍ମୀ କାର୍ଯ୍ୟ କରିଥାନ୍ତି, ନିକୃଷ୍ଟତମ ଅନୀତିର ଆଶ୍ରୟ ନେଇ, ଏବଂ କୁଚକ୍ରାନ୍ତକାରୀ ଭାବେ ନିଜ ରାଜ୍ୟର ଲାଭ ନିମନ୍ତେ ଅନ୍ୟ ରାଜ୍ୟର କ୍ଷତି କରିଥାନ୍ତି ତା'ର ଏକ ଉଦାହରଣ ମୁଁ ଦେଉଛି ।

ମଧୁବାବୁଙ୍କ ଚେଷ୍ଟାରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ନିମନ୍ତେ ଓଡୋନେଲ କମିଟି ଗଠିତ ହୋଇଥିଲା । ୧୯୩୨ ମସିହା ଜାନୁୟାରୀ ୧୧ ଓ ୧୨ ତାରିଖରେ ସିଂହଭୂମି ଓ ମେଦିନୀପୁର ବିଷୟରେ ଓଡିଶା ପକ୍ଷରୁ ସାକ୍ଷ୍ୟ ଗ୍ରହଣ କରିବା କଥା ଜାମସେଦପୁରରେ ସ୍ଥିର ହୋଇଥିଲା । ମଧୁବାବୁ ସେ ସମୟରେ ଜରାଜୀର୍ଣ୍ଣ ଏବଂ ଶାରୀରିକ ପୀଡାର କଷାଘାତରେ ସିଂହଭୂମି ଯାଇ ପୂର୍ବପରି ପ୍ରଚାର କାର୍ଯ୍ୟ କରି ଓଡୋନେଲ କମିଟି ସମ୍ମୁଖରେ ସାକ୍ଷ୍ୟ ଦେବା ଅବସ୍ଥାରେ ନଥିଲେ । ସେଥିପାଇଁ ସେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉପରେ ପୂର୍ଣ୍ଣ ନିର୍ଭରଶୀଳ ଥାଇ ବିଶ୍ୱାସ ରଖିଥିଲେ ଯେ, ନୀଳକଣ୍ଠ ବାବୁ ସୁଚାରୁରୂପେ ସେ କାର୍ଯ୍ୟ ତୁଲାଇବେ । ଯଦିଓ ସେତେବେଳେ ନୀଳକଣ୍ଠ ବାବୁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥିଲେ, ତଥାପି ସିଂହଭୂମି ଓ ମେଦିନୀପୁର ଓଡିଶା ସହ ମିଶ୍ରଣ ନିମନ୍ତେ ତଥ୍ୟଭିତ୍ତିକ ଏକ ଉଚ୍ଚକୋଟୀର ସ୍ମାରକ ପତ୍ର ତିଆର କରି ସେ ସବୁ ଅଞ୍ଚଳ ବୁଲି ଏ ପ୍ରସ୍ତାବ ସପକ୍ଷରେ ଜନମତ ସୃଷ୍ଟିକରି ଜାନୁୟାରୀ ୧୦ ତାରିଖ ବେଳକୁ ଜାମସେଦପୁରରେ ଥାନ୍ତି । ସିଂହଭୂମି ଜିଲ୍ଲା ସେ ସମୟରେ ଉତ୍କଳ ପ୍ରଦେଶ କମିଟି ଅଧୀନସ୍ଥ ଥିଲା । ସେ ନିଶ୍ଚିତ ଥାନ୍ତି ଯେ, ଓଡୋନେଲ କମିଟି ତାଙ୍କ ଆଭିମୁଖ୍ୟ ଗ୍ରହଣ କରିବେ, ଏବଂ ଏହା ଜଣାଯାଉଥିଲା ଯେ, ଓଡୋନେଲ କମିଟି ସିଂହଭୁମି ଓ ମେଦିନୀପୁରକୁ ଓଡିଶା ସହ ମିଶ୍ରଣ କରିବେ ।

ସେହି ସମୟରେ କଂଗ୍ରେସର ଆଞ୍ଚଳିକ ଅଧ୍ୟକ୍ଷ ଥିଲେ ଡ଼: ରାଜେନ୍ଦ୍ର ପ୍ରସାଦ । ସେ ତ ସିଂହଭୁମିକୁ ଓଡିଶାକୁ ଦେବାକୁ ତୀବ୍ର ବିରୋଧ କରୁଥିଲେ । ତାର ମୁଖ୍ୟ କାରଣ ଜାମସେଦପୁର । ସିଂହଭୂମି ଅଞ୍ଚଳରେ ଓଡିଆ ଲୋକ ବସବାସ କରୁଥିବାରୁ ମୟୁରଭଞ୍ଜ ରାଜା ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଆଶା କରିଥିଲେ ଦିନେ ତାହା ଓଡିଶା ସହ ମିଶିବ । ତେଣୁ ଟାଟା କମ୍ପାନୀ କାରଖାନା ଆରମ୍ଭ କଲା ସମୟରେ କମ୍ପାନୀ ତରଫରୁ ଗୋରୁ ମହୀଷାଣୀ ପର୍ବତର ଖଣି ଅଞ୍ଚଳ ତାଙ୍କୁ ଦେବାକୁ ଆଗ୍ରହ ପ୍ରକାଶ କରିବାରୁ ଓଡିଆଙ୍କ ଉନ୍ନତି ଆଶାରେ "ମାଗଣାରେ" ଖଣିକୁ ଟାଟା କମ୍ପାନୀକୁ ଦେଇଥିଲେ ରାଜାସାହେବ । ଟାଟା କମ୍ପାନୀ କିନ୍ତୁ ଓଡିଶାର କିଛି ଉନ୍ନତି ନକରି ବିହାରର

ସମ୍ପୂର୍ଣ୍ଣ ଉନ୍ନତି କରୁଥିଲେ ଏବଂ ବର୍ତ୍ତମାନ ମଧ୍ୟ କରୁଛନ୍ତି । ସିଂହଭୂମି ଅଞ୍ଚଳ ଓଡିଶାକୁ ଚାଲିଗଲେ ଜାମସେଦପୁର ମଧ୍ୟ ଚାଲିଯିବ । ସେହି ଆଶଙ୍କାରେ ରାଜେନ୍ଦ୍ର ବାବୁ କଳେ ବଳେ କୌଶଳେ ସିଂହଭୂମିକୁ ଓଡିଶାରୁ ଛଡାଇ ରଖିବା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ । ସେହିପରି ବଙ୍ଗୀୟ ନେତାମାନେ ମଧ୍ୟ ମେଦିନୀପୁରକୁ ଓଡିଶା ସହ ମିଶ୍ରଣକୁ ବିରୋଧ କରୁଥିଲେ । ମଧୁବାବୁଙ୍କ ନିଧାର୍ଯ୍ୟ ଅନୁପସ୍ଥିତିର ସୁଯୋଗ ନେଇ ସେମାନେ ମିଶି ଜାନୁୟାରୀ ୧୦ ତାରିଖରେ ଗୋଟିଏ ପ୍ରସ୍ତାବ କଂଗ୍ରେସ କମିଟିରେ ପାଶ କରାଇ ଦେଲେ ଯେ, କଂଗ୍ରେସ ଓଡୋନେଲ କମିଟିକୁ ପ୍ରତ୍ୟାଖ୍ୟାନ କଲା ଏବଂ ସେହିଦିନ ୧୦ ତାରିଖରେ ଟେଲିଗ୍ରାମ ଜରିଆରେ ଜାମସେଦପୁରରେ ଥିବା ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଜଣାଇ ଦିଆଗଲା ଯେ, ସେ ଓଡୋନେଲ କମିଟି ସମ୍ମୁଖରେ ସାକ୍ଷ୍ୟ ଦେଇ ପାରିବେ ନାହିଁ । ନୀଳକଣ୍ଠ ବାବୁ ତୁରନ୍ତ ଅନୁରୋଧ କଲେ ପ୍ରସ୍ତାବକୁ ଦୁଇଦିନ ଘୁଞ୍ଚାଇ ଦେବା ନିମନ୍ତେ, କିନ୍ତୁ ତାହା ପ୍ରତ୍ୟାଖ୍ୟାନ ହୋଇଗଲା । ନୀଳକଣ୍ଠ ବାବୁ କଂଗ୍ରେସର ଜଣେ ଶୃଙ୍ଖଳିତ କର୍ମ୍ମୀ ଭାବେ ଓଡୋନେଲ କମିଟିରେ ସାକ୍ଷ୍ୟ ଦେଇ ପାରିଲେ ନାହିଁ । ସିଂହଭୁମି ଓ ମେଦିନୀପୁର ଚିରଦିନ ପାଇଁ ଓଡିଶାରୁ ବିଚ୍ଛନ୍ନ ହୋଇଗଲା । ପରେ କିନ୍ତୁ ନୀଳକଣ୍ଠ ବାବୁ କଂଗ୍ରେସ ଅନୁଷ୍ଠାନକୁ ପରିତ୍ୟାଗ କରିଥିଲେ । କିନ୍ତୁ ମଧୁବାବୁଙ୍କ ପରି ସେଦିନ କାହିଁକି ଦୃଢମନା, ଜ୍ଞାନୀ, ଗୁଣୀ, ଓଡିଶା ପ୍ରେମୀ ଏବଂ ବିଚାରବନ୍ତ ଓଡିଶାର ନେତା ପଣ୍ଡିତ ନୀଳକଣ୍ଠ ଦାସ କଂଗ୍ରେସରୁ ଇସ୍ତଫା ଦେଇ ଓଡୋନେଲ କମିଟି ସମ୍ମୁଖରେ ସାକ୍ଷ୍ୟ ଦେଲେ ନାହିଁ ତାହାହିଁ ଆଶ୍ଚର୍ଯ୍ୟ ଲାଗେ ।

ଓଡ଼କେଲ୍ କମିଟୀ ରିପୋର୍ଟ ପ୍ରକାଶ ପାଇଲା ସେଥିରେ ଓଡ଼ିଶା ପ୍ରଦେଶ ଗଠନ ପ୍ରସ୍ତାବ ଥିଲା । କିନ୍ତୁ ତାହା ଓଡ଼ିଶା ବାସୀଙ୍କୁ ଯେତିକି ଆନନ୍ଦ ଦେଇଥିଲା, ତାହାଠାରୁ ବେଶୀ ନିରାନନ୍ଦ ଓ ବ୍ୟଥା ଦେଇଥିଲା । କାରଣ ଓଡ଼ିଶାର ସୀମା ବାହାରେ ସିଂହଭୂମି ଓ ମେଦିନୀପୁରକୁ ରଖି ଦେବାର ପ୍ରସ୍ତାବ ଥିଲା । ମଧୁସୂଦନ ସେ ସମୟକୁ ତାଙ୍କର ଦୁରାରୋଗ୍ୟ ବ୍ୟାଧିର ଭୀଷଣ ଆକ୍ରମଣରୁ ସାମୟିକ ଭାବେ ଆରୋଗ୍ୟ ଲାଭ କରି ଭୟଙ୍କର ଦୁର୍ବଳ ଅବସ୍ଥାରେ ଥାନ୍ତି ।

ସେ ରିପୋର୍ଟକୁ ବିରୋଧ କରିବା ନିମନ୍ତେ କେତେକ ନେତୃସ୍ଥାନୀୟ ବ୍ୟକ୍ତି ଏକ ସର୍ବଦଳୀୟ ସଭା ଲୁପ୍ତପ୍ରାୟ ଉତ୍କଳ ସମ୍ମିଳନୀ ଆନୁକୁଲ୍ୟରେ ଆୟୋଜନ କରିବାକୁ ଚେଷ୍ଟା କଲେ । କିନ୍ତୁ କଂଗ୍ରେସ ପାର୍ଟିର ଲୋକେ ବିରୋଧ କରିବସିଲେ ।

ସୁରେନ୍ଦ୍ର ମହାନ୍ତି ଲେଖନ୍ତି – '' କିନ୍ତୁ ଆରମ୍ଭରୁ ପ୍ରାଦେଶିକ କଂଗ୍ରେସ ଏହି ସମ୍ମିଳନୀ ବରୁଦ୍ଧରେ ଅସହଯୋଗ ଘୋଷଣା କରି ବସିଲେ । ଓଡ଼ିଶାର କଂଗ୍ରେସ ନେତୃବୃନ୍ଦ ହଠାତ୍ ହୋଇ ଉଠିଲେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ବିରୋଧୀ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରସ୍ତାବ ମଧ୍ୟରେ ସେମାନେ ଲକ୍ଷ କରିଥିଲେ ଯେପରି ଭାରତର ସ୍ୱାଧୀନତା ପ୍ରାପ୍ତି ପଥରେ ବ୍ରିଟିଶ ସାମ୍ରାଜ୍ୟବାଦୀ ଷଡଯନ୍ତ୍ରର ଆଉ ଗୋଟାଏ ନୂଆ ଫିସାଦ । ସେଥିପାଇଁ ସମ୍ମିଳନୀର ପ୍ରସ୍ତାବିତ ଅଧିବେଶନକୁ ପଣ୍ଡ କରିବା ପାଇଁ ସେମାନେ ଏକ ପ୍ରକାର ଯୁଦ୍ଧ ଘୋଷଣା କରି ଦେଇଥିଲେ ।

"ଏ ପରିସ୍ଥିତିରେ ଇଦ୍‌ଗା ପଡ଼ିଆରେ ସମ୍ମିଳନୀର ମୁକ୍ତ ଅଧିବେଶନ ସମ୍ଭବ ହୋଇ ପାରିଲା ନାହିଁ । ଫେବୃୟାରୀ ୧୨ ଓ ୧୩ ତାରିଖ ଦିନ ଶ୍ରୀରାମଚନ୍ଦ୍ର ଭବନରେ ଏକ ନେତୃ ସମ୍ମିଳନୀ ପାଇଁ ଚାଲିଲା ଆୟୋଜନ । ସମ୍ମିଳନୀ ପକ୍ଷରୁ ଅନୁମତି ପତ୍ର ପ୍ରାପ୍ତ ପ୍ରତିନିଧିମାନେ କେବଳ ଏହି ସମ୍ମିଳନୀରେ ଯୋଗଦେଇ ପାରିବେ । ଭୁବନାନନ୍ଦ ଦାସ ବରିତ ଥିଲେ ଏହି ସମ୍ମିଳନୀର ସଭାପତି ରୂପେ । ସମ୍ମିଳନୀର ଏହିପରି ନିୟନ୍ତ୍ରିତ ଆୟୋଜନକୁ କଟାକ୍ଷ୍ୟ କରି 'ସମାଜ' ବିଦ୍ରୂପାଘାତ କରିଥିଲେ ।

"ଲୋକ ଲୋଚନ ଅଗୋଚରେ
କାନ୍ଦିବେ ବସି ପକା ଘରେ ।

''ମଧୁସୂଦନ ଏହି ସମ୍ମିଳନୀ ଉଦ୍‌ଘାଟନ କରିବା ପାଇଁ ଉଦ୍ୟୋକ୍ତାମାନଙ୍କର ଅନୁରୋଧ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନର ଭଗୀରଥ କୁଳବୃଦ୍ଧ ମଧୁସୂଦନଙ୍କୁ ବାଦ୍‌ଦେଇ ନେତୃସମ୍ମିଳନୀ ସମ୍ଭବ ହୋଇପାରିବ କିପରି ।

...... '' ଚିକିଟୀର ଗୌରଚନ୍ଦ୍ର ପାଟଦେଓ ଓ ବ୍ରଜସୁନ୍ଦର ଆସିଥିଲେ ସମ୍ମିଳନୀ ଉଦ୍‌ଘାଟନ ପାଇଁ ମଧୁସୂଦନଙ୍କୁ ବ୍ୟକ୍ତିଗତ ଭାବରେ ଆମନ୍ତ୍ରଣ ଜଣାଇବା ଉଦ୍ଦେଶ୍ୟରେ ।''

..... କିନ୍ତୁ ମଧୁସୂଦନଙ୍କ ଅବସ୍ଥା ଲକ୍ଷ୍ୟ କରି ବ୍ରଜସୁନ୍ଦର କହିଲେ - "ଆପଣଙ୍କ ପକ୍ଷରେ ସମ୍ମିଳନୀରେ ଯୋଗଦେବା ବାସ୍ତବିକ ଉଚିତ ହେବ ନାହିଁ । ଆପଣ ବରଂ ଗୋଟେ ବାର୍ତ୍ତା ପଠାଇ ଦେଲେ ଚଳିବ ।"

"ବ୍ରଜସୁନ୍ଦରଙ୍କ ଆଡ଼େ ଫେରି ଚାହିଁ ମଧୁସୁଦନ କମ୍ପିତ କଣ୍ଠରେ କହିଲେ - ଓଡ଼ନେଲ କମିଟୀ ଓଡ଼ିଶା ପ୍ରତି ଏପରି ଅବିଚାର କରିଥିବା ବେଳେ ମୁଁ ପଡ଼ିରହିଥିବି ବିଛଣାରେ, ଆଉ ତୁମ୍ଭେମାନେ ରାମଚନ୍ଦ୍ର ଭବନରେ କରିବ ନେତା ସମ୍ମିଳନୀ....

''ମଧୁସୂଦନ ସେଇପରି କମ୍ପିତ କଣ୍ଠରେ କହି ଚାଲିଲେ, ଚିର ବିଶ୍ରାମ ନେବାର ବେଳ ତ ହୋଇ ଆସିଲା ବ୍ରଜସୁନ୍ଦର । ସେଥିପାଇଁ ଚିନ୍ତା କାହିଁକି ? କିନ୍ତୁ ଶେଷ ନିଶ୍ୱାସ ପ୍ରବାହିତ ହେଉଥିବା ପର୍ଯ୍ୟନ୍ତ ଓଡ଼ିଶାର ପ୍ରଶ୍ନ ସମ୍ପର୍କରେ ମୁଁ ନୀରବ ରହିପାରିବି କିପରି ?...

''ଦୁରାରୋଗ୍ୟ ବ୍ୟାଧିର ଆକ୍ରମଣରେ ମଧୁସୂଦନ ଜୀବନ୍ମୃତ, କଙ୍କାଳସାର, ଜରାଜୀର୍ଣ୍ଣ ବୃଦ୍ଧ । ମାତ୍ର ଅଫୁରନ୍ତ ପ୍ରାଣଶକ୍ତିରେ ସେ ତଥାପି ଯେପରି ନବ ସଂଜୀବିତ ।

"....ଡାକ୍ତର ଓ ଆତ୍ମୀୟମାନଙ୍କ ନିଷେଧ ସତ୍ତ୍ୱେ, ମଧୁସୂଦନ ଯୋଗ ଦେଲେ ନେତା ସମ୍ମିଳନୀରେ, ସମ୍ମିଳନୀ ଉଦ୍‌ଘାଟନ ନିମନ୍ତେ । ନିର୍ଦ୍ଦିଷ୍ଟ ସମୟଠାରୁ ଗୋଟାଏ ମିନିଟ୍ ସୁଦ୍ଧା ବ୍ୟତିକ୍ରମ ନଥିଲା ।

"...ସେଦିନ ମଧୁସୂଦନଙ୍କ ଭାଷଣ ଥିଲା ଭାବୋଚ୍ଛ୍ୱାସର ଏକ ମହାପ୍ରବାହ, ଯେପରି ସମ୍ବେଦନଶୀଳ ସେହିପରି ସୁତୀବ୍ର । ମାତ୍ର ପ୍ରାୟ ଘଣ୍ଟାଏ ବ୍ୟାପୀ ଭାଷଣ ପରେ ସେ କ୍ଳାନ୍ତ ହୋଇ ପଡ଼ିଥିଲେ । ତାଙ୍କ ଦେହ କମ୍ପିବା ପାଇଁ ଆରମ୍ଭ କରିଥିଲା । ବ୍ରଜସୁନ୍ଦର ଦୁଇ ହାତରେ ଧରି ଗୋଟେ ଚୌକି ଉପରେ ବସାଇ ଦେଲେ ।" (୩୪୩-୩୫ ପୃଷ୍ଠା କୁଳବୃଦ୍ଧ) ।

ସେଦିନର ଦୀର୍ଘ ବକ୍ତୃତାକୁ ଏଠାରେ ଉଲ୍ଲେଖ କରିବା ସମ୍ଭବ ନୁହଁ । ଏହିପରି ଅତିରିକ୍ତ ପରିଶ୍ରମ ଯୋଗୁଁ ପୁଣି ବାହାରି ପଡ଼ିଲା ପ୍ରୋଷ୍ଟେଟ ଗ୍ଲାଣ୍ଡର ଯନ୍ତ୍ରଣା । ଡାକ୍ତରଙ୍କ ପରାମର୍ଶରେ ତାଙ୍କୁ କଲିକତା ନିଆଗଲା ଚିକିତ୍ସା ପାଇଁ ।

ଉପର ଲିଖିତ ଘଟଣାରୁ ଅନୁଭବ କରିହେବ ମଧୁବାବୁ ଓଡ଼ିଶା ଗଠନ ପାଇଁ ଏବଂ ଗଠନ ପ୍ରକ୍ରିୟାରେ ତ୍ରୁଟି ନିମନ୍ତେ କି ପ୍ରକାର ଉନ୍ମାଦଗ୍ରସ୍ତ ଥିଲେ ନିଜ ସ୍ୱାସ୍ଥ୍ୟକୁ ଭୁଲି, ନିଜକୁ ଭୁଲି ।

ଏହି ପ୍ରତିବାଦ ସଭାରେ ଯୋଗ ଦେବା ନିମନ୍ତେ ଜୀବନ୍ମୃତ ଅବସ୍ଥାରେ ମଧୁସୂଦନଙ୍କର ଯେଉଁ ପ୍ରାଣ ଭରା ଆବେଗ ଥିଲା ତାହା ପ୍ରକାଶ କରେ ମଧୁବାବୁ କେଉଁ ସ୍ତରର ଏବଂ କେଉଁ ପ୍ରକାରର ଜାତିପ୍ରେମୀ ଏବଂ ଦେଶପ୍ରେମୀ ଥିଲେ । ତାହା ଜଣେ ଆତ୍ମାନୁଭୂତିକୁ ଆଣି ପାରିଲେ ବୁଝି ପାରିବ ତାଙ୍କ ପ୍ରତି ଯେଉଁମାନେ କଟାକ୍ଷ କରନ୍ତି ଏବଂ ହତାଦର କରନ୍ତି ସେମାନେ କେତେଦୂର ଠିକ୍ ।

ସାଇମନ୍ କମିଶନ୍ ଆସିବା ପୂର୍ବରୁ ଜାତୀୟ କଂଗ୍ରେସରେ ପ୍ରସ୍ତାବ ଗ୍ରହଣ କରାଯାଇଥିଲା ଯେ, ଭାଷା ଭିତ୍ତିରେ ପ୍ରଦେଶ ଗଠନ କରାଯିବ। ଓଡିଶାର କଂଗ୍ରେସ ନେତୃବୃନ୍ଦ ସେ ପ୍ରସ୍ତାବକୁ ବିଶ୍ୱାସ କରି ଏବଂ ତୁଙ୍ଗ କଂଗ୍ରେସ ନେତୃମଣ୍ଡଳୀଙ୍କ ଉପରେ ନିର୍ଭର କରି ଆଶା କରିଥିଲେ ଓଡିଶା ପ୍ରଦେଶ ନିଶ୍ଚିତ ଗଠିତ ହେବ। କିନ୍ତୁ ମଧୁବାବୁ ଓଡିଶା ଗଠନ ପାଇଁ ସେ ପ୍ରସ୍ତାବ ତଥା ତାହାର କାର୍ଯ୍ୟକାରିତା ପାଇଁ ତତ୍କାଳୀନ ତୁଙ୍ଗ କଂଗ୍ରେସ ନେତୃମଣ୍ଡଳୀଙ୍କୁ ବିଶ୍ୱାସ କରିନଥିଲେ। ସେଥିପାଇଁ ସାଇମନ୍ କମିଶନ୍‌ଙ୍କୁ କଂଗ୍ରେସ ବାସନ୍ଦ କଲେ ମଧ ମଧୁବାବୁ ତାଙ୍କ ଧାରାରେ କମିଶନଙ୍କୁ ଅଭିନନ୍ଦନ ଜଣାଇଥିଲେ ଏବଂ ତଦ୍ୱାରା ଓଡିଶା ପ୍ରଦେଶ ଗଠନ ହେବା ବାଟ ଫିଟିଥିଲା ।

ଉପରେ ଲିଖିତ ସିଂହଭୂମି ସର୍ମ୍ପକରେ ଡ଼: ରାଜେନ୍ଦ୍ର ପ୍ରସାଦଙ୍କ କାର୍ଯ୍ୟ ଧାରା ଦେଖି, ଏ ବିନୀତ ଲେଖକ ମତ ପୋଷଣ କରେ ଯେ, ମଧୁବାବୁ ଓଡିଶା ପ୍ରଦେଶ ଗଠନ କରିନଥିଲେ କେବେବି ତାହା ହୋଇନଥାନ୍ତା । ଅନ୍ୟ ଦିଗରୁ ଦେଖିଲେ ମହତାବ, ନିତ୍ୟାନନ୍ଦ କାନୁନଗୋ, ରାଧାନାଥ ରଥ ବାବୁ ମାନଙ୍କର ସ୍ୱାର୍ଥ ପରାୟଣ ଭାବ ଏବଂ ନବକୃଷ୍ଣ ଚୌଧୂରୀ, ସାରଙ୍ଗଧର

ଦାସ ବାବୁ ମାନଙ୍କର ନିଃସ୍ପୃହ ଭାବ-ଜନିତ ନିକୃଷ୍ଟ ପରିବେଶ ଯେ, ରାଜେନ୍ଦ୍ର ପ୍ରସାଦଙ୍କ ପରି ପଡୋଶୀ ରାଜ୍ୟର ତୁଙ୍ଗ କଂଗ୍ରେସ ନେତୃମଣ୍ଡଳୀଙ୍କର କୁଚକ୍ରାନ୍ତକୁ ମୁକାବିଲା କରି ପାରିଥାନ୍ତା ଏବଂ ଓଡିଶା ପ୍ରଦେଶ ଗଠନ କରାଯାଇ ପାରିଥାନ୍ତା ଏହା ଭାବିବା ନିଶ୍ଚିତ ଭାବେ "ଆକାଶ କଇଁଆ ଓ ଚିଲିକା ମାଛ" ସଦୃଶ ଅସମ୍ଭବ। ମଧୁବାବୁଙ୍କ ବିଚାର ଏବଂ କାର୍ଯ୍ୟଧାରା ସେ ସମୟରେ ଗୋପବାବୁ, ମହତାବ ବାବୁ ପ୍ରଭୃତିଙ୍କ ଦ୍ୱାରା ବିରୋଧ କରାଯାଇ ଥିଲେ ମଧ୍ୟ, ଓଡିଶା ପ୍ରଦେଶ ଗଠନ ନିମନ୍ତେ ତାହାହିଁ ଯେ ଏକାନ୍ତ ଭାବେ ଠିକ୍ ଥିଲା ଏହା ଧ୍ରୁବ ସତ୍ୟ।

୧୯୩୩ ମାର୍ଚ୍ଚ ୧୭ ତାରିଖରେ ପ୍ରକାଶ ପାଇଲା ବ୍ରିଟିଶ ସରକାରଙ୍କ ପକ୍ଷରୁ ଓଡ଼ିଶା ପ୍ରଦେଶ ଗଠନର ସ୍ୱୀକୃତି । ମଧୁସୂଦନ ଚିତ୍କାର କରି ଉଠିଲେ, "Orissa Province declard, Orissa Province declared" । କିନ୍ତୁ ପାରଳାଖେମୁଣ୍ଡି ଓ ଜୟପୁର ବାଦ ପଡ଼ିଗଲା । ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟୀ ଏହାର ନିଷ୍ପତ୍ତି କରିବେ ।

ଶୈଳବାଳା କହିଲେ, ''ଆପଣ ଏତେ 'excited' ହେବେ ନାହିଁ ବାବା । ଡାକ୍ତରମାନେ ବାରମ୍ବାର କହିଛନ୍ତି ସମ୍ପୂର୍ଣ୍ଣ ବିଶ୍ରାମ ନେବାକୁ ।''

ମଧୁସୂଦନ ପୁଣି ଉତ୍‌କ୍ଷିପ୍ତ ହୋଇ ଉଠି କହିଲେ, ''ଅନେକ କାମ ବାକି ପଡ଼ିଛି କଟକରେ । ପାରଳାଖେମୁଣ୍ଡି ଓ ଜୟପୁରର ଭବିଷ୍ୟତ ଅନିଶ୍ଚିତ । ମୁଁ ଏଠି ରହିବି ନରସିଙ୍ଗ୍ ହୋମରେ, କଲିକତାରେ ? କଟକ ଫେରିବା ପାଇଁ ଶୀଘ୍ର ବ୍ୟବସ୍ଥା କର ଶୈଳ'' । ଶୈଳବାଳା ବିସ୍ମିତ ହୋଇ ଚାହିଁଲେ ମଧୁସୂଦନଙ୍କ ଆଡ଼େ । ଭାବିଲେ କଣ୍ଠରେ ହଠାତ୍ କୁଆଡୁ ଆସିଲା ଏତେ ପ୍ରାଣ ଶକ୍ତି । ମଧୁସୂଦନ କଟକ ଆସିଲେ । ପାରଳା ରାଜା ଆଉଥରେ ବିଲାତ ବାହାରିଲେ । ମଧୁବାବୁ ଭାବୁଥିଲେ ସେ ଯାଇଥାନ୍ତେ ବିଲାତ । କିନ୍ତୁ ତାହା ତ ସମ୍ଭବ ନଥିଲା ।

ପାରଳାଖେମୁଣ୍ଡି ମହାରାଜା ଜାହାଜରେ ଗଲାବେଳେ ଚିଠି ଲେଖିଥିଲେ, ସେହି ଜାହାଜରେ ବିହାର-ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଯାଉଥିଲେ । ତାଙ୍କ ସଙ୍ଗେ କଥା ହେଲାବେଳେ ସେ ଆପଣଙ୍କର

ବହୁତ ପ୍ରଶଂସା କରୁଥିଲେ । ଓଡ଼ିଶା ପ୍ରତି ସେ ବହୁତ ସହାନୁଭୂତିଶୀଳ । ଶେଷକୁ ଲେଖିଥିଲେ, ମୁଁ ଆଶାକରେ ଆପଣ ଭଲ ହୋଇ ସିମଳା ଯାଇଥିବେ । ଇତ୍ୟାଦି ।

ଏହି ଚିଠି ବ୍ରଜସୁନ୍ଦର ମଧୁବାବୁଙ୍କ ନିକଟରେ ପଢୁଥିଲେ ।

ସୁରେନ୍ଦ୍ର ବାବୁ ଲେଖନ୍ତି, ''ଆଃ ! ସିମଳା....ମଧୁସୂଦନଙ୍କ ପଞ୍ଜରା ଥରାଇ ଗୋଟାଏ ଦୀର୍ଘଶ୍ୱାସ ବାହାରି ଆସିଲା । ମୁଁ ତ ଚାଲିଛି ବର୍ତ୍ତମାନ କବରଖାନା ଆଡ଼େ ।'' ସ୍ୱଗତୋକ୍ତି କରିବା ପରି କଣ୍ଠରେ ମଧୁସୂଦନ କହିଲେ, "କିନ୍ତୁ ତା ପୂର୍ବରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ମୁଁ କଣ ଦେଖି ପାରିବି ନାହିଁ ?'' ଯନ୍ତ୍ରଣାରେ ମଧୁସୂଦନଙ୍କ ମୁହଁର ରେଖାସବୁ କୁଞ୍ଚିତ ହୋଇ ଉଠିଲା ।

''ବ୍ରଜସୁନ୍ଦର କହିଲେ ଭଗବାନଙ୍କ ଇଚ୍ଛାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଆପଣ ନିଶ୍ଚୟ ଦେଖିଯିବେ ଆପଣଙ୍କ ଆଖିରେ ।''

''କ୍ଷୀଣ କମ୍ପିତ କଣ୍ଠରେ ମଧୁସୂଦନ କହିଲେ ... ସବୁ ଉପରବାଲାର ଇଚ୍ଛା । ଏ ଅକିଞ୍ଚନ ପ୍ରତି ଭଗବାନଙ୍କର କରୁଣା ଥିଲେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ମୁଁ ଦେଖି ଯାଇପାରେ ବ୍ରଜସୁନ୍ଦର । କିନ୍ତୁ ସାରା ଜୀବନ, ମୁଁ ଏକା ଏକା ସଂଗ୍ରାମ କରି ଆସିଥିଲି କଣ ଏଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ? ସ୍ୱତନ୍ତ୍ର ଓଡ଼ିଶା ଥିଲା ନିମିତ୍ତ ମାତ୍ର । ମୁଁ ଚାହିଁଥିଲି ଓଡ଼ିଆ ଜାତିର ଅଭ୍ୟୁଦୟ । ମୋର କର୍ତ୍ତବ୍ୟ ଶେଷ ହୋଇଛି, ଏଣିକି ଉତ୍ତର ଦାୟିତ୍ୱ ତୁମମାନଙ୍କର ।'' (୩୫୬ ପୃଷ୍ଠା କୁଳବୃଦ୍ଧ)

ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବାର ଘୋଷଣା ଜାଣିବା ପାଇଁ ମଧୁବାବୁଙ୍କର କି ଆବେଗ ଭରା ଆନନ୍ଦ । ନିଜ ଜୀବନକୁ ତୁଚ୍ଛ କରି କଲିକତାରୁ ସେ ଚାଲି ଆସିଲେ କଟକ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ନିମନ୍ତେ ଯାହାଙ୍କର ଇଚ୍ଛା ନଥିଲା, ସେମାନେ ଏ ଭାବାବେଗ ହୃଦୟରେ ଅନୁଭବ କରିପାରିବେ ନାହିଁ ଅବଶ୍ୟ । କିନ୍ତୁ ସାଧାରଣ ଓଡ଼ିଆ ପ୍ରାଣରେ ଏହା ସ୍ପନ୍ଦନ ସୃଷ୍ଟି କରିବ ନିଶ୍ଚୟ ।

ଉପର ଲିଖିତ ଉଦ୍ଧୃତ ଅଂଶରୁ ଆମେ ଜାଣିପାରିବା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରତିଶ୍ରୁତି ପ୍ରକାଶିତ ହେଲାପରେ ମଧୁବାବୁ ଯାହା କହିଥିଲେ

ତାହା ହେଉଛି ''ଓଡ଼ିଶା ପ୍ରଦେଶ ଗଠନ ମାଧ୍ୟମରେ ଚାହିଁଥିଲେ ଓଡ଼ିଆ ଜାତିର ଅଭ୍ୟୁଦୟ ।'' ପାଠକେ ! ବିଚାର କରିବେ, ଆଜି ବି କଣ ଆମର ସବୁ ନେତାମାନଙ୍କ ପ୍ରାଣରେ ମଧୁବାବୁ ଆଶାକରିଥିବା ଓଡ଼ିଆତ୍ୱଭରା ଓଡ଼ିଆ ଜାତିର ଅଭ୍ୟୁଦୟ ଘଟିଛି କି ? ନା ପୂର୍ବପରି ସେହି ମହାଭାରତୀୟ ଭାବଧାରରେ ଉନ୍ମାଦଗ୍ରସ୍ତ ହୋଇ ଅନ୍ୟମାନଙ୍କର ଗୋଡ଼ାଣିଆ ହୋଇ କେନ୍ଦ୍ରସରକାର ଓଡ଼ିଶା ପ୍ରତି ଅବିଚାର କରି ଯାହାକଲେ ମଧ ସବୁ ଭଲ ବୋଲି କହିଥାନ୍ତି । ନିଜ ସ୍ୱାର୍ଥ ପଛରେ ଧାଇଁ ନିଃସ୍ୱାର୍ଥପର ଭାବେ ଦେଶସେବା କରୁଥିବା କଥା କହି କାର୍ଯ୍ୟରେ ଅନ୍ୟ ପ୍ରକାର କରି ଆସୁଛନ୍ତି । ଏହାହିଁ ଓଡ଼ିଶା ପାଇଁ ଭାଗ୍ୟର ବିଡ଼ମ୍ବନା !

ଏହା ପ୍ରକାଶ୍ୟ ଭାବେ ଆଲୋଚିତ ନହେଲେ ମଧ୍ୟ ଏହା ସତ୍ୟ ଯେ, ଭାଇସ୍‌ରୟ ଲର୍ଡ କର୍ଜନ ଓଡିଆ ଭାଷାଭାଷୀ ଅଞ୍ଚଳ ଏକତ୍ରିତ ହେବା ନେଇ ମଧୁବାବୁଙ୍କ ଦୃଢ ଏବଂ ଯଥାଯଥ ଯୁକ୍ତି ଦ୍ୱାରା ଏପରି ଭାବେ ଅଭିଭୂତ ଓ ପ୍ରଭାବିତ ହୋଇଥିଲେ ଯେ, ସେ ଭାଷା ଭିତ୍ତିରେ ସମଗ୍ର ଓଡିଆ ଭାଷୀ ଅଞ୍ଚଳ ଏକତ୍ରିତ କରି ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ କରିବାକୁ ସ୍ଥିର କରିଥିଲେ । ସେଥିପାଇଁ ତାଙ୍କ ଯୋଜନା ଥିଲା, ବଙ୍ଗ ପ୍ରଦେଶରୁ ପୂର୍ବ ବଙ୍ଗକୁ ଅଲଗା କରି, ଆଜି ଯାହା କାର୍ଯ୍ୟତଃ ହୋଇଛି, ପଶ୍ଚିମବଙ୍ଗ ଓ ବିହାରକୁ ଏକତ୍ର ରଖି, ସମଗ୍ର ଓଡିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରି ଏକ ବୃହତ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ସୃଷ୍ଟି କରିବେ। ଏହି କାରଣରୁ ବଙ୍ଗଭାଷା ତଥା ବଙ୍ଗ ବିଭାଜନ ନେଇ ଭୀଷଣ ଆନ୍ଦୋଳନ ଓ ଜୀବନ ହାନି ହେବାରୁ କର୍ଜନ୍‌ଙ୍କୁ ବିଲାତ ଫେରି ଯିବାକୁ ହୋଇଥିଲା । ତାଙ୍କ ଯୋଜନା କାର୍ଯ୍ୟକାରୀ ହୋଇପାରି ନଥିଲା । ବିଲାତ ଲର୍ଡ ସଭାରେ କର୍ଜନ କହିଥିଲେ - "ଓଡିଶାବାସୀ ଶାନ୍ତି ପ୍ରିୟ ଏବଂ ଆନ୍ଦୋଳନକାରୀ ହୋଇନଥିବାରୁ ତାଙ୍କ ଦାବି ଶୁଣାଯାଏ ନାହିଁ" ।

କର୍ଜନ ହିଁ ନିରାଟ ସତ କଥା କହିଥିଲେ । ଓଡିଶାବାସୀ "ନିର୍ଜୀବ" ନକହି ସମ୍ମାନର ସହ ଶାନ୍ତିପ୍ରିୟ ବୋଲି କହିଥିଲେ । ଶୋଷିତ, ନିର୍ଯ୍ୟାତିତ, ଉପେକ୍ଷିତ, ଅବହେଳିତ ଓଡିଆ ଜାତିର ରକ୍ତରେ ତେଜ, ଉତ୍ତେଜନା, ଉନ୍ମାଦନା କାହିଁ ? ବଙ୍ଗବାସୀ, ଝାଡଖଣ୍ଡ ବାସୀ, ତେଲେଙ୍ଗାନା ବାସୀ ଏବଂ

ସେମାନଙ୍କର ନେତା ମାନଙ୍କ ପରି ସାହସ ଓ ସଂଗ୍ରାମୀ ମନୋବୃତ୍ତି ଓଡିଶାରେ କାହିଁ ? ଆନ୍ଦୋଳନ କରିବ କିଏ ? ତେଲେଙ୍ଗାନାର କଂଗ୍ରେସ ବିଧାୟକଙ୍କ ସହ ଭିନ୍ନ ଭିନ୍ନ ସମସ୍ତ ପାର୍ଟିର ବିଧାୟକ ମାନେ ଏକତ୍ରିତ ହୋଇ ବିଧାନସଭାରୁ ଯେପରି ଇସ୍ତଫା ଦେଇଥିଲେ, ଓଡିଆ ଭାଷାଭାଷୀ ସମସ୍ତ ଅଞ୍ଚଳ ମିଶ୍ରଣ କରି ବିସ୍ତୃତ ଓଡିଶା ପ୍ରଦେଶ ଗଠନ କରିବା ନିମନ୍ତେ ଓଡିଶାର ସମସ୍ତ ବିଧାୟକ ଇସ୍ତଫା ଦେବା ସମ୍ଭବ ହେବା ସ୍ୱପ୍ନ ପରି ଲାଗେ । ସେଥିପାଇଁ ଏକକ ସଂଗ୍ରାମୀ ମଧୁବାବୁ ଆଜି ସ୍ୱାର୍ଥପର ରାଜନେତାମାନଙ୍କ ଦ୍ୱାରା ରଚିତ ବିସ୍ମୃତିର ଚକ୍ରବ୍ୟୁହ ମଧ୍ୟରେ ଆସନ୍ନ ଅବଲୁପ୍ତ ଅବସ୍ଥାରେ ।

ଆଉ ଗୋଟିଏ କଥା ଲେଖୁଛି, ସମ୍ବଲପୁର ମଧ୍ୟପ୍ରଦେଶ ସହମିଶି ରହିଥିଲା । ୧୮୯୫ ମସିହାରେ ମଧ୍ୟପ୍ରଦେଶର ଚିଫ୍ କମିଶନର ଆଦେଶ ଦେଲେ ସମ୍ବଲପୁରରୁ ଓଡିଆ ଭାଷା ଉଠାଇ ହିନ୍ଦି ଭାଷା ପ୍ରଚଳନ କରିବାକୁ । ଏହି ଆଦେଶ ବିରୁଦ୍ଧରେ ସମ୍ବଲପୁର ଓ ଓଡିଶାରେ ଘୋର ଅସନ୍ତୋଷ ଦେଖାଦେଲା । ସରକାରୀ ଆଦେଶର ଅସାରତା ନାନା ତଥ୍ୟପୂର୍ଣ୍ଣ ଯୁକ୍ତି ଦ୍ୱାରା ପ୍ରତିପାଦନ କରି ମଧୁବାବୁ ବିଲାତର ଭାରତ ସଚିବଙ୍କ ନିକଟକୁ ଏକ ପତ୍ର ଲେଖିଲେ । ଏହି ଆବେଦନର ଏକ ନକଲ ବିଲାତ ପାର୍ଲାମେଣ୍ଟର ଜଣେ ପ୍ରଭାବଶାଳୀ ସଭ୍ୟ ସାର୍ ଚାର୍ଲସ ଡିଲକ୍ଙ୍କ ନିକଟକୁ ପଠାଇ ତାଙ୍କ ପ୍ରତିପତ୍ତିକୁ ଓଡିଆଙ୍କ ନିମନ୍ତେ ବ୍ୟବହାର କରିବାକୁ ଅନୁରୋଧ କଲେ । ସାର୍ ଡିଲକ୍ ମଧ ଏ ତଥ୍ୟପୂର୍ଣ୍ଣ ଯଥା ଯଥ ଆବେଦନରେ ପ୍ରଭାବିତ ହୋଇ ମଧୁବାବୁଙ୍କୁ ଉତ୍ତର ଦେଲେ ଯେ, ସେ ଓଡିଆଙ୍କ ପ୍ରତି ପୂର୍ଣ୍ଣ ସହାନୁଭୂତି ପ୍ରକାଶ କରୁଛନ୍ତି ଏବଂ ଭାରତ ସଚିବଙ୍କ ସହ ଏ ବିଷୟରେ ଆଲୋଚନା କରିବେ । ଭାଇସରୟଙ୍କ ନିକଟକୁ ଓଡିଆ ଭାଷା ସମ୍ବଲପୁରରୁ ଉଠିଯିବା ଆଦେଶ ବିପକ୍ଷରେ ଏବଂ ସମ୍ବଲପୁରକୁ ଓ ଅନ୍ୟ ଓଡିଆ ଭାଷା ଭାଷୀ ଅଞ୍ଚଳ ଓଡିଶା ସହ ମିଶିବା ନେଇ ଥରକୁ ଥର ଦାବି ପତ୍ରମାନ ମଧୁବାବୁ ପଠାଇ ଚାଲିଲେ । ୧୮୯୭ରେ ଏ ବିଷୟ ବ୍ରିଟିଶ ସରକାରଙ୍କ ସଂଗେ ପ୍ରତ୍ୟକ୍ଷ ଭାବେ ଆଲୋଚନା କରିବାକୁ ବିଲାତ ଗଲେ । ସେଠି ପାର୍ଲାମେଣ୍ଟ ସଭ୍ୟ ମାନଙ୍କୁ ଏବଂ ଭାରତ ସଚିବଙ୍କୁ ବହୁ ତଥ୍ୟାବଳୀ ସହ ପୁସ୍ତକ ଏବଂ

ମାନପତ୍ରମାନ ପ୍ରକାଶ କରି ପ୍ରଭାବିତ କରି ଆସିଲେ । କଟକ ଫେରି ଭାଇସରୟଙ୍କୁ ପ୍ରତିବାଦ ପତ୍ର ପଠାଇବା ସଙ୍ଗେ ସଙ୍ଗେ "ଉତ୍କଳ ଦୀପିକାରେ" ଧାରାବାହିକ ଭାବେ ଇଂଲିଶ୍‌ରେ ଓଡିଆଙ୍କ ପ୍ରତି ସରକାରଙ୍କ ଅବିଚାର କଥା ଲେଖି ଚାଲିଲେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ । ଶେଷରେ ଭାଇସରୟ କଲିକତାର କମିଶନର ଫ୍ରେଜର ସାହେବଙ୍କୁ ରିପୋର୍ଟ ଦେବାକୁ ଆଦେଶ ଦେଲେ ।

୧୯୦୦ ମସିହାରେ ଲର୍ଡ୍ କର୍ଜନ ଆସିଲେ ଭାଇସରୟ ହୋଇ । ବିଲାତରେ ମଧୁବାବୁ ୧୮୯୭ ମସିହାରେ ଯେଉଁ ପ୍ରଚାର ପତ୍ର ଓଡିଶା ବିଷୟରେ ବାଣ୍ଟିଥିଲେ ତାହା ସେ ପଢିଥିଲେ । ସେଥିରୁ ସେ ଓଡିଶାର ସ୍ଥାପତ୍ୟ କଳା, ତାରକସି କଳା, ବୀରତ୍ୱ ଓ ଅନ୍ୟାନ୍ୟ ବଡିମା ମାନ ପଢି ବିଶେଷ ମୁଗ୍ଧ ହୋଇଥିଲେ । ସେ ଜଣେ ଐତିହାସିକ ଓ ସ୍ଥାପତ୍ୟ କଳା ପ୍ରେମୀ ଥିଲେ । ଦିଲ୍ଲୀ ଆସି ମଧୁବାବୁଙ୍କ ଆବେଦନ ପତ୍ର ସବୁ ପଢିଥିଲେ । ତେଣୁ ଓଡିଶାର ସ୍ଥାପତ୍ୟ କଳା ଓ ଅନ୍ୟ ବିଷୟ ମାନ ଦେଖିବାକୁ ଭାରତ ପରିଦର୍ଶନ ଆରମ୍ଭରେ ପ୍ରଥମ କରି ଓଡିଶା ଆସିଲେ । ସମ୍ବର୍ଦ୍ଧନା ସଭାରେ ତାରକସି କାମ ପାତ୍ରରେ ମାନପତ୍ର ଦିଆଯାଇଥିଲା । ତାହା ଦେଖି ସେ ମୁଗ୍ଧ ହେଲେ । ପୁରୀ ଓ ଭୁବନେଶ୍ୱରର ସ୍ଥାପତ୍ୟ କଳା ମଧୁବାବୁ ବୁଝାଇବାରୁ ଭାରି ପ୍ରଭାବିତ ହୋଇଥିଲେ ।

ଏହି ଅବସରରେ ସମ୍ବଲପୁର କଥା ଏବଂ ଅନ୍ୟ ଓଡିଆ ଭାଷା ଭାଷୀ ଅଞ୍ଚଳର ମିଶ୍ରଣ କଥା ମଧ୍ୟ କହିଥିଲେ । ପରେ କଲିକତାରେ ଦେଖାହେବା ସମୟରେ ମଧ୍ୟ ଏ ବିଷୟରେ ଆଲୋଚନା କରିଥିଲେ । ମଧୁବାବୁ କର୍ଜନଙ୍କୁ ଓଡିଶା ସପକ୍ଷରେ ପ୍ରଭାବିତ କରିପାରିଥିଲେ । ୧୯୦୧ ମସିହାରେ ମଧ୍ୟପ୍ରଦେଶର ଚିଫ୍ କମିଶନର ସିମଳା ଯାଉଥିବା ଖବର ଡେରିରେ ପାଇ ଏକ ଦୀର୍ଘ ଟେଲିଗ୍ରାମ ବହୁଟଙ୍କା ଖର୍ଚ୍ଚକରି ଭାଇସ୍‌ରାଏଙ୍କ ନିକଟକୁ ପଠାଇ ବିଲାତକୁ ଦେଇଥିବା ଆବେଦନପତ୍ରର ନକଲ ମଧ୍ୟ ପଠାଇଥିଲେ । ଭାଇସ୍‌ରାଏଙ୍କ ପ୍ରାଇଭେଟ ସେକ୍ରେଟାରୀ ମଧୁବାବୁଙ୍କୁ ଲେଖିଲେ – "ମୁଁ ଆପଣଙ୍କ ସବୁ ଆବେଦନ ପତ୍ର ଏବଂ ସବୁ ଟେଲିଗ୍ରାମ୍ ଭାଇସ୍‌ରାଏଙ୍କୁ

ଦେଖାଇଛି । ମିଷ୍ଟର ଫ୍ରେର୍ଜରଙ୍କ ରିପୋର୍ଟ ପାଇଲା ପରେ ନିଷ୍ପତ୍ତି ନିଆଯିବ । ଓଡିଆ ଜାତି ଆପଣଙ୍କ ପରି ଜଣେ ନେତା ପାଇଥିବାରୁ ମୁଁ ସେମାନଙ୍କୁ ଅଭିନନ୍ଦନ ଜଣାଉଛି" । ମଧୁବାବୁ ସମ୍ବଲପୁର ବାସୀଙ୍କୁ ପ୍ରଭାବିତ କଲେ ସେମାନେ ଯାଇ ଭାଇସ୍‌ରାଏଙ୍କୁ ଦେଖାକରିବାକୁ । ଶ୍ରୀପତି ମିଶ୍ର , ବ୍ରଜମୋହନ ପଟ୍ଟନାୟକ ପ୍ରଭୃତି ଭାଇସ୍‌ରାଏଙ୍କୁ ଦେଖାକରିବାକୁ ଗଲେ । ମଧୁବାବୁ ଯିବେ ବୋଲି ସେମାନେ ଆଶା କରିଥିଲେ । କିନ୍ତୁ ସେ ଗଲେ କଟକର ପ୍ରଭାବରେ, କମିଟି ଆସିଛି ବୋଲି ଦେଖାଯିବ । ତେଣୁ ମଧୁବାବୁ ଜାଣି ଶୁଣି ଗଲେ ନାହିଁ । ଶ୍ରୀପତି ବାବୁ ହାରିକା ଦେଖାନପାଇ ଫେରିଆସିଲେ । ମଧୁବାବୁ କିନ୍ତୁ ପରେ ଗଲେ । ଭାଇସ୍‌ରାଏ କର୍ଜନଙ୍କ ସଙ୍ଗେ ଦେଖାକଲେ । କର୍ଜନ ସାହେବ କହିଲେ ଫ୍ରେର୍ଜର ସାହେବ ସମ୍ବଲପୁରରେ ଓଡିଆ ଭାଷା ରହିବାକୁ ରିପୋର୍ଟ ଦେଇଛନ୍ତି । ସମ୍ବଲପୁରରେ ଓଡିଆ ଭାଷା ପ୍ରଚଳିତ ହେବ। କିନ୍ତୁ ମଧୁବାବୁ କହିଲେ - "ତାହା ଆପଣ କରିବେ ବୋଲି ମୁଁ ଆଶା କରିଥିଲି । କଣ ଏତିକି ପାଇଁ ମୁଁ କଟକରୁ ସିମଲାକୁ ଆସିଥିଲି" ? କର୍ଜନ ସାହେବ ଆଉ କଣ ବୋଲି ପଚାରିବାରୁ , ସମ୍ବଲପୁର ଏବଂ ଅନ୍ୟ ଓଡିଆ ଭାଷୀ ଅଞ୍ଚଳ ଓଡିଶାରେ ମିଶିବା କଥା ମଧୁବାବୁ କହିଲେ ଏବଂ ତାହାହିଁ ମୁଖ୍ୟ କଥା ବୋଲି ଜୋରଦେଲେ। ଏହିପରି ଆଲୋଚନା ପରେ ସେ ଫେରିଲେ । କଲିକତାରେ ଦେଖାହେଲା ବେଳେ ଏହି ବିଷୟରେ ମଧ୍ୟ କଥା ବାର୍ତ୍ତା ବେଳେ ଉତ୍‌ଥାପନ କରନ୍ତି ।

୧୯୦୩ ମସିହା ଜାନୁୟାରୀ ପହିଲାରୁ ସମ୍ବଲପୁରରେ ଓଡିଆ ଭାଷା ପ୍ରଚଳିତ ହେଲା। ୧୯୦୫ ରେ ସମ୍ବଲପୁର ସହ କଳାହାଣ୍ଡି, ବଲାଙ୍ଗିର, ସୋନପୁର, ସୁନ୍ଦରଗଡ଼, ରେଢାଖୋଲ, ବଣାଇ, ଗାଙ୍ଗପୁର ପ୍ରଭୃତି ଗଡଜାତ ଦେଶୀୟ ରାଜ୍ୟକୁ ଓଡିଶା ସହ ମିଶ୍ରଣ କରାଗଲା । ସେତେବେଳେ ମଧ୍ୟ ଉତ୍ତର ଓଡିଶାର ମିଶ୍ରଣ ହେଲା । ଏହା ମଧୁବାବୁଙ୍କ ପ୍ରଚେଷ୍ଟା ଦ୍ୱାରା ପ୍ରଥମ ଦେଶ ମିଶ୍ରଣ । ପରେ ୧୯୩୪ ମସିହାରେ ଓଡନେଲ କମିଟି ସୁପାରିଶ କ୍ରମେ ଦକ୍ଷିଣାଞ୍ଚଳ ମିଶ୍ରଣ କରାଗଲା । ଏସବୁ କରି ମଧ୍ୟ ସେ ସନ୍ତୁଷ୍ଟ ନଥିଲେ । କାରଣ ଆହୁରି ବହୁ ଓଡିଆ ଭାଷା ଭାଷୀ ଅଞ୍ଚଳ ବାହାରେ ରହିଗଲା । ଅନ୍ୟ ପ୍ରଦେଶ ମାନଙ୍କ ପରି ଯଦି ସମସ୍ତ ବ୍ୟକ୍ତି ଯାହା ଦେହରେ ଉତ୍କଳ ଜନନୀଙ୍କ

ରକ୍ତ ସଞ୍ଚାଳିତ, ସେ ସମସ୍ତେ ଏକଜୁଟ ହୋଇ ମଧୁବାବୁଙ୍କୁ ସହଯୋଗ କରିଥାନ୍ତେ, ତେବେ ଆହୁରି ଅନେକ ଓଡିଆ ଅଞ୍ଚଳ ଓଡିଶାରେ ମିଶି ପାରିଥାନ୍ତା ।

ଆଉ ଗୋଟିଏ ଦୁଃଖଦ ଘଟଣା କଥା ଲେଖୁଛି । ୨୦୦୫ ମସିହାରେ "ଉତ୍କଳ ସମ୍ମିଳନୀ"ର ବିଶିଷ୍ଟ କର୍ମକର୍ତ୍ତାମାନେ ସମ୍ବଲପୁର ଯାଇଥିଲେ ସମ୍ବଲପୁର ବାସୀଙ୍କ ସହ ମିଶି ଓଡିଶାରେ ସମ୍ବଲପୁର ମିଶିବାର ଶତବାର୍ଷିକୀ ଉତ୍ସବ ପାଳନ କରିବାକୁ । କିନ୍ତୁ ସମ୍ବଲପୁର ବାସୀ ତାହାକୁ ବିରୋଧ କରି ସଭା କରାଇ ଦେଲେ ନାହିଁ । ଏହା ଏକ ଦୁର୍ଭାଗ୍ୟର କଥା ନିଶ୍ଚୟ । ସମ୍ବଲପୁର ପାଇଁ ମଧୁବାବୁ କେତେ କଣ କରିନଥିଲେ । ଅଥଚ ତାଙ୍କ ଗଠିତ ସମ୍ମିଳନୀକୁ ସଭା କରାଇ ଦେଲେ ନାହିଁ କି ସେମାନେ ନିଜେ ମଧ ମିଶ୍ରଣର ଶତବାର୍ଷିକୀ ପାଳନ କଲେନାହିଁ ।

ବର୍ତ୍ତମାନ ସରକାରଙ୍କ ଦ୍ୱାରା ବିଶେଷ କ୍ଷେତ୍ରରେ ଉତ୍କୃଷ୍ଟତା ଲାଭ କରିଥିବା ବ୍ୟକ୍ତିମାନଙ୍କୁ କଳା, ନାଚ, ଗୀତ, ଖେଳ, କୁଦ, ସନ୍ତରଣ, ଶିକ୍ଷା, ବିଜ୍ଞାନ ପ୍ରଭୃତି ନାନା କ୍ଷେତ୍ରରେ ସମ୍ମାନିତ କରାଯାଇ ସ୍ମୃତିରକ୍ଷା କରାଯାଉଛି ବିଜୁବାବୁଙ୍କ ନାମରେ ପୁରସ୍କାର ଦିଆଯାଇ । ତାହା ଦିଆଯାଉ । ମଧୁବାବୁଙ୍କ ପରେ ଓଡିଶାର ଦ୍ୱିତୀୟ ନେତା ବିଜୁବାବୁ ଯିଏ ଓଡିଶା ପାଇଁ ଅନେକ କିଛି କରିଛନ୍ତି । କିନ୍ତୁ ମଧୁବାବୁଙ୍କ ନାମରେ କିଛି ପୁରସ୍କାର ଦିଆଯିବା ଉଚିତ୍ । ଓଡିଶୀ ନାଚ, ଗୀତ, ଓ ଅନ୍ୟାନ୍ୟ କ୍ଷେତ୍ରରେ ସର୍ବଭାରତୀୟ ସ୍ତରରେ ପୁରସ୍କାର ମାନ ଦିଆଯାଉଛି ।

ମଧୁବାବୁ ପ୍ରଥମେ ଓଡିଶା ଲୋକଙ୍କ ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତ ପ୍ରତି ଦୃଷ୍ଟି ଦେଇଥିଲେ । ଜିଲ୍ଲାବୋର୍ଡର ଚେୟାରମ୍ୟାନ କଲେକଟର ଓ ମଧୁବାବୁ ଭାଇସ୍ - ଚେୟାରମ୍ୟାନ ହେଲେ । ମଧୁବାବୁ ପାଲିଙ୍କି, ଶଗଡ ଓ ଦରକାର ପଡିଲେ ଚାଲି ଚାଲି ଗାଁ ଗାଁ ବୁଲି ପ୍ରାଥମିକ ଚିକିତ୍ସାର ବନ୍ଦୋବସ୍ତ କରୁଥିଲେ ଓ ପ୍ରାଇମେରୀ ସ୍କୁଲ ମାନ ଗଠନ କରୁଥିଲେ । ସବୁ ସ୍କୁଲରେ ସେ ବ୍ୟାୟାମ ଶିକ୍ଷକ ନିଯୁକ୍ତ କରିଥିଲେ । ନାରୀ ଶିକ୍ଷା ଉପରେ ଜୋର ଦେଉଥିଲେ । ପରେ ପରେ ମାଇନର ସ୍କୁଲ ଓ ହାଇସ୍କୁଲ ମାନ ଗଠନ କରାଯାଉଥିଲା ।

ରେଭେନ୍‌ସା ବାଳିକା ମାଇନର ସ୍କୁଲରେ ନିଜ ଖର୍ଚ୍ଚରେ ୪ଟି ଶ୍ରେଣୀ ଖୋଲି ତାକୁ ହାଇସ୍କୁଲ କରି ସେଥିରେ ବିଲାତ ଫେରନ୍ତା ଶୈଳବାଳା ଦାସଙ୍କୁ ପ୍ରଧାନ ଶିକ୍ଷୟତ୍ରୀ କରିଥିଲେ, ମୁରବିମାନେ ଯୁବତୀ ଝିଅ ମାନଙ୍କୁ ବାହାରକୁ ଛାଡୁ ନଥିବାରୁ ଶୈଳବାଳା ମଧୁବାବୁଙ୍କ ପ୍ରେରଣାରେ ଆବଦ୍ଧ ଘୋଡାଗାଡି ନେଇ ଘର ଘର ବୁଲି ଝିଅ ମାନଙ୍କୁ ସ୍କୁଲକୁ ଆଣି ଛାଡୁଥିଲେ। ପରେ ସେହି ଚାରି ଶ୍ରେଣୀର ପରିଚାଳନା ଦାୟିତ୍ୱ ସରକାର ନେଇଥିଲେ । ମଧୁବାବୁଙ୍କ ଚେଷ୍ଟାରେ ରେଭେନ୍‌ସା କଲେଜରେ ବି.ଏ. କ୍ଲାସ ଖୋଲା ଯାଇଥିଲା। ତାଙ୍କ ଚେଷ୍ଟାରେ ଲଅ କଲେଜ ପ୍ରତିଷ୍ଠା କରାଯାଇଥିଲା । ଯୁବକ ମାନଙ୍କ ପାଇଁ ତାଙ୍କ ଘରବାରି ପଡିଆରେ ଖେଳ କୁଦର ବନ୍ଦୋବସ୍ତ କରିଥିଲେ । ସେ ଜଣେ ଭଲ ଟେନିସ୍ ଖେଳାଳୀ ଥିଲେ । ତେଣୁ ତାଙ୍କ ନାମରେ ସ୍କୁଲ କଲେଜ ମାନଙ୍କରେ ପୁରସ୍କାରମାନ ଉପରୋକ୍ତ କ୍ଷେତ୍ରରେ ଦିଆଯାଇ ପାରନ୍ତା । ସେ କୃଷି ଓ କୃଷକ ମାନଙ୍କ ଉନ୍ନତି ପାଇଁ ଚେଷ୍ଟା କରିଥିଲେ । ଭାରତରେ ପ୍ରଥମ କରି କୃଷକ ସଂଗଠନ ଗଢିଥିଲେ ।

ଜମିଦାରଙ୍କ ଦାଉରୁ କୃଷକ ମାନଙ୍କୁ ରକ୍ଷାକରିବା ପାଇଁ ନାନା ଚେଷ୍ଟା କରିଥିଲେ । ବେଙ୍ଗଲ-ବିହାର-ଓଡିଶା କାଉନ୍‌ସିଲରେ ଓଡିଆ ଚାଷୀଙ୍କ ଶୋଷଣ ଏବଂ ଜମିଦାରଙ୍କ ସ୍ୱାର୍ଥ ରକ୍ଷା ନିମନ୍ତେ "ଓଡିଶା ଟେନାନ୍‌ସୀ ବିଲ"କୁ ମଧୁବାବୁଙ୍କ ପ୍ରବଳ ବିରୋଧ ସତ୍ତ୍ୱେ ପାଶ କରାଯିବାରୁ ମଧୁବାବୁ ଭାଇସରୟଙ୍କୁ ଦେଖାକରି ତାଙ୍କର ଯଥାଯଥ ଶକ୍ତିଶାଳୀ ଯୁକ୍ତିମାନ ଉପସ୍ଥାପନ କରିବାରୁ ଭାଇସରୟ ମହୋଦୟ, ଭାରତରେ କୌଣସି କାଉନ୍‌ସିଲ ଦ୍ୱାରା ପାଶ ହୋଇଥିବା ବିଲକୁ ଫେରାଇବା ବିରଳ ଘଟଣା ସଦୃଶ, "ଓଡିଶା ଟେନାନ୍‌ସୀ ବିଲ"ରେ ଦସ୍ତଖତ ନଦେଇ ଫେରାଇ ଦେଇଥିଲେ। କିନ୍ତୁ ପରେ ବିହାର-ଓଡିଶା କାଉଁସିଲରେ, ମନେହୁଏ ମଧୁବାବୁଙ୍କ ଅନୁପସ୍ଥିତିରେ, ଜମିଦାର ମାନଙ୍କ ପ୍ରଭାବରେ ସେ ବିଲ ପାଶ ହୋଇ ଆଇନରେ ପରିଣତ ହୋଇଥିଲା । ତେଣୁ କୃଷକ ମାନଙ୍କ ମଧ୍ୟରେ ତାଙ୍କ ନାମରେ ପୁରସ୍କାର ଦିଆଯାଇପାରନ୍ତା । ଖାଲି କୃଷିଦ୍ୱାରା ସମାଜର ଉନ୍ନତି ସମ୍ଭବ ନୁହେଁ ବୋଲି ଦେଶୀୟ ଶିଳ୍ପ, କୁଟୀରଶିଳ୍ପ, ହସ୍ତ ଶିଳ୍ପ, ସୂକ୍ଷ୍ମ ତାରକସି କାମ, ଶିଙ୍ଗକାମ, ତନ୍ତୀମାନଙ୍କ ଦ୍ୱାରା

ହାତବୁଣା ଲୁଗା ଇତ୍ୟାଦି ନାନା ପ୍ରକାର ରୋଜଗାରକାରୀ ଅନୁଷ୍ଠାନମାନ ଗଠନ କରି ଆର୍ଥିକ ସହାୟତା ଦେଇ ଲୋକଙ୍କର ଉନ୍ନତି ସାଧନ କରିଥିଲେ । ତେଣୁ ଏ ସବୁ କ୍ଷେତ୍ରରେ ତାଙ୍କ ନାମରେ ପୁରସ୍କାରମାନ ଦିଆଯାଇ ପାରନ୍ତା ।

ମଧୁବାବୁ ଆଜୀବନ ଜଣେ ଖାଣ୍ଟି ଓଡ଼ିଆ ଥିଲେ । ହିନ୍ଦୁ ଧର୍ମକୁ ବିଶ୍ୱାସ କରୁଥିଲେ । ତେବେ କଲିକତାରେ ପଢୁଥିବା ସମୟରେ ଖ୍ରୀଷ୍ଟିଆନ୍‌ମାନଙ୍କ ସଂସ୍ପର୍ଶରେ ଆସି ଯୀଶୁଖ୍ରୀଷ୍ଟଙ୍କୁ ଭଲ ପାଇଥିଲେ । ଖ୍ରୀଷ୍ଟଙ୍କ ଦର୍ଶନ ଓ ଆଦର୍ଶକୁ ଭଲ ପାଇଥିଲେ । ସେଥିପାଇଁ ସେ ଖ୍ରୀଷ୍ଟିୟାନ ହୋଇ ଥିଲେ । କିନ୍ତୁ ଖ୍ରୀଷ୍ଟିୟାନଙ୍କ ପ୍ରାଣରେ ଖ୍ରୀଷ୍ଟଙ୍କ ଧର୍ମଭାବ (Christianity) ପରିବର୍ତ୍ତେ ଚର୍ଚ୍ଚର ପ୍ରସାର ଓ ଖ୍ରୀଷ୍ଟିୟାନ ସଂଖ୍ୟା ବୃଦ୍ଧି (Churchianity) କରିବାର ପ୍ରଚେଷ୍ଟା ବେଶୀ । ତେଣୁ ମଧୁବାବୁ ଚର୍ଚ୍ଚକୁ କେବେ ଯାନ୍ତି ନାହାନ୍ତି କି ଖ୍ରୀଷ୍ଟିୟାନ ହେବାକୁ କାହାକୁ କେବେ କହି ନାହାନ୍ତି ।

ମଧୁବାବୁ ପ୍ରାଣେ ପ୍ରାଣେ ଜଣେ ବଳିଷ୍ଠ ଓଡ଼ିଆ ଥିଲେ । ଓଡ଼ିଆ ଜାତିର ସଂସ୍କୃତି ଏବଂ ପରମ୍ପରା ତାଙ୍କ ହୃଦୟ ମଧ୍ୟରେ ଗୁନ୍ଥା ହୋଇଥିଲା ଦୃଢ଼ ଭାବେ । ଖ୍ରୀଷ୍ଟିୟାନ ହୋଇ ଯାଇଥିବା ଅନ୍ୟ ଭାରତୀୟ କି ଓଡ଼ିଆଙ୍କ ପରି ସେ ମନେ ମନେ ବିଲାତି ହୋଇ ଯାଇ ନଥିଲେ । ଓଡ଼ିଆ ଜାତିର ସଂସ୍କୃତି ଓ ପରମ୍ପରା ସହିତ ସେ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ ଏବଂ ତାହା ସଦାସର୍ବଦା ରକ୍ଷା କରିବାକୁ ତତ୍‌ପର ଥିଲେ ।

ମଧୁବାବୁଙ୍କ ଘରେ ଶୈଳବାଳା ଜନ୍ମ ଗ୍ରହଣ କରିଥିଲେ ମଧୁବାବୁଙ୍କ ବନ୍ଧୁଙ୍କର ସ୍ତ୍ରୀଙ୍କ ଗର୍ଭରୁ । ମଧୁବାବୁ ଶୈଳବାଳାଙ୍କୁ ସେହି ଦିନୁ ନିଜ ଝିଅଭାବେ ଗ୍ରହଣ କରିଥିଲେ । ପ୍ରାୟ ଦୁଇବର୍ଷ ପରେ ମଧୁବାବୁଙ୍କ ସ୍ତ୍ରୀ ଦେହତ୍ୟାଗ କରିଥିଲେ । ତେଣୁ ଶୈଳବାଳା ମଧୁବାବୁଙ୍କ ଦ୍ୱାରା ଉଭୟ ବାପା ଓ ମାର ସ୍ନେହରେ ଲାଳିତ ପାଳିତ ହୋଇଥିଲେ । ମଧୁବାବୁଙ୍କ ବ୍ୟକ୍ତିଗତ ପ୍ରଭାବ ଶୈଳବାଳାଙ୍କ ଚରିତ୍ର ଉପରେ ଗଭୀର ଭାବେ ପଡ଼ିଥିଲା ।

ମଧୁବାବୁ ଶୈଳବାଳାଙ୍କୁ ବିଲାତ ପଠାଇଥିଲେ । ଶିକ୍ଷାପ୍ରାପ୍ତି ନିମନ୍ତେ । ସେଠାରେ ସେ ଯାହାଙ୍କ ଘରେ ରହୁଥିଲେ ସେ ଶୈଳବାଳାଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇଥିଲେ । ସେଠାରେ ରାଜାରାଣୀଙ୍କୁ ଅତିଥିଭାବେ ଦେଖା କରିବା ଏକ ବିଶେଷ ସମ୍ମାନଜନକ ଘଟଣା । ରାଜାରାଣୀଙ୍କ ଦେଖା ପାଇଲେ ଖାଲି

ବିଲାତ ନୁହେଁ, ୟୁରୋପ, ଆମେରିକା ପ୍ରଭୃତି ଦେଶମାନଙ୍କରେ ତାହା ମଧ ଅତି ସମ୍ମାନଜନକ ବୋଲି ସ୍ୱୀକୃତ ଥିଲା ଏକ ବିଶେଷ ମର୍ଯ୍ୟାଦାପୂର୍ଣ୍ଣ ପରମ୍ପରା ଭାବେ । ସେଥିପାଇଁ ଶୈଳବାଳାଙ୍କ ଗୃହକର୍ତ୍ତ୍ରୀ ବହୁ ଚେଷ୍ଟା କରିଥିଲେ । କାରଣ ତାହା ଦ୍ୱାରା ତାଙ୍କର ମଧ୍ୟ ସମ୍ମାନ ବୃଦ୍ଧି ହେବ । ଭାରତରେ ଶୈଳବାଳାଙ୍କ ସଂପର୍କରେ ବହୁବିଧ ଖବର ସଂଗ୍ରହ କରିବା ପରେ ବିଶେଷତଃ ମଧୁବାବୁଙ୍କ କନ୍ୟା ହୋଇଥିବା ଯୋଗୁଁ ତାଙ୍କୁ ଅନୁମତି ମିଳିଥିଲା, ରାଜାରାଣୀଙ୍କ କୋର୍ଟରେ ଅତିଥି ଭାବେ ଉପସ୍ଥିତ ହୋଇ ସେମାନଙ୍କୁ ସମ୍ମାନ ଜଣାଇବା ପାଇଁ ।

ରାଜାରାଣୀଙ୍କ ପରିଷଦରେ ଉପସ୍ଥିତ ହେବା ନିମନ୍ତେ ଏକ ବିଶେଷ ପରିଧାନର ନିୟମ ଥିଲା । ତାହା ସେ ଦେଶର ବେଶଭୂଷାର ଏକ ଉଚ୍ଚ ମର୍ଯ୍ୟାଦା ସମ୍ପନ୍ନ ଶୈଳୀରେ ଗଠିତ । ସେହି ପ୍ରକାର ପୋଷାକ ପିନ୍ଧି ଯିବା ନିମନ୍ତେ ରାଜପ୍ରାସାଦ ଏବଂ ହାଇ କମିସନରଙ୍କ ଅଫିସରୁ ବିଶେଷ ତତ୍‌ପରତା ପ୍ରକାଶ ପାଇଥିଲା । ସେଥିପାଇଁ ଶୈଳବାଳାଙ୍କ ଗୃହକର୍ତ୍ତ୍ରୀ ତାଙ୍କୁ ସେପରି ଏକ ବିଶେଷ ଦୋକାନକୁ ନେଇକରି ଗଲେ ପୋଷାକ ବାଛିବାକୁ । କିନ୍ତୁ ଶୈଳବାଳା ଜିଦ୍ ଧରି ବସିଲେ ଯେ, ସେ ତାଙ୍କ ଦେଶର ପରିଧାନ ଶାଢ଼ୀ ବ୍ୟତୀତ ଅନ୍ୟ କିଛି ପିନ୍ଧି କରି ଯିବେ ନାହିଁ । ସେହି ବିଷୟ ବ୍ରିଟିଶ ସରକାର ଏବଂ ରାଜପ୍ରାସାଦ କର୍ମଚାରୀମାନଙ୍କୁ ଜଣାଇ ଦିଆଗଲା । ଏ ପର୍ଯ୍ୟନ୍ତ ସେ ଦେଶରେ ଏପରି ନିୟମ ଉଲ୍ଲଙ୍ଘନ କରାଯାଇ ନଥିଲା । ଇଂଲଣ୍ଡରେ ତ ଏପରି ବ୍ୟତିକ୍ରମ ହେବାର କାରଣ ନାହିଁ । ବ୍ରିଟିଶ ସାମ୍ରାଜ୍ୟର ଅନ୍ୟ କୌଣସି ଦେଶର ଲୋକ ମଧ ରାଜପ୍ରାସାଦର ଏ ନିୟମ ଭଙ୍ଗ କରି ନଥିଲେ । ତେଣୁ ଏହା ଏକ ବଡ଼ ଚିନ୍ତାର ବିଷୟ ହେଲା । ବ୍ରିଟିଶ ଲୋକେ ତାଙ୍କ ଦେଶର ପରମ୍ପରା ରକ୍ଷା ନିମନ୍ତେ ବଦ୍ଧ ପରିକର ଓ ବଡ଼ ରକ୍ଷଣଶୀଳ । ତେଣୁ ଶୈଳବାଳାଙ୍କୁ ବହୁତ ପ୍ରକାର ବୁଝାବୁଝି କରାଗଲା । କିନ୍ତୁ ସେ କହିଲେ ସେ ରାଜ ପରିଷଦରେ ସମ୍ରାଟଙ୍କୁ ଦେଖା କରି ନ ପାରନ୍ତି, କିନ୍ତୁ ତାଙ୍କ ଜାତିର, ତାଙ୍କ ଦେଶର ପରମ୍ପରା ତ୍ୟାଗ କରି ପାରିବେ ନାହିଁ । ଏହା ପୂର୍ବରୁ ମଧୁବାବୁ ବିଲାତ ଯାଇଥିଲେ । ସେଠାରେ ସେ ନିଜର ବ୍ୟକ୍ତିତ୍ୱର ବିଶେଷ ପ୍ରଭାବ ପକାଇ ପାରିଥିଲେ । ସେ ନିଜର ପରିଚିତି ସକାଶେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ସମୟରୁ ମୁଣ୍ଡରେ ଏକ ପଗଡ଼ି ପିନ୍ଧିବାର ଯେଉଁ ପ୍ରଥା

ପ୍ରଚଳନ କରିଥିଲେ, ବିଲାତରେ ମଧ୍ୟ ତାହା ପିନ୍ଧୁଥିଲେ । ତାଙ୍କୁ ଯେତେ ବୁଝାଇଲେ ସେ ତାହା ତ୍ୟାଗ କରି ମୁଣ୍ଡରେ କ୍ୟାପ ପିନ୍ଧି ନଥିଲେ । ମଧୁବାବୁ ଲଣ୍ଡନରେ ବ୍ରିଟିଶ ସରକାରଙ୍କର ଉଚ୍ଚ ମହଲରେ ବେଶ ପରିଚିତ ହୋଇଥିଲେ । ସମସ୍ତେ ତାଙ୍କର ସ୍ୱଭାବ କଥା ମନେ ପକାଇ ତାଙ୍କ ଝିଅଙ୍କର ସ୍ୱଭାବକୁ ତାହା ସହ ତୁଳନା କରିଥିଲେ ।

ଯାହା ହେଉ କୌଣସି ପ୍ରକାରେ ରାଜ ପ୍ରସାଦରୁ ଅନୁମତି ଆସିଲା ଯେ ଶୈଳବାଳା ଶାଢ଼ୀ ପିନ୍ଧି ରାଜ ପରିଷଦରେ ରାଜାରାଣୀଙ୍କୁ ଅତିଥି ଭାବେ ଦେଖା କରି ପାରିବେ । ଶୈଳବାଳା ଶାଢ଼ୀ ପିନ୍ଧି ଗଲେ । ହାତରେ ଗ୍ଲୋଭସ ଲଗାଇଲେ ନାହିଁ । ରାଜାରାଣୀଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ହାତ ନ ମିଳାଇ (hand shake) ଦୁଇହାତ ଯୋଡ଼ି ମୁଣ୍ଡ ନୁଆଇଁ ନମସ୍କାର କଲେ, ନିଜ ଜାତିର ନିଜ ଦେଶର ପରମ୍ପରା ଶୈଳୀରେ ।

ଶୈଳବାଳାଙ୍କର ଏ ପ୍ରକାର ଜିଦ୍‌ର କାରଣ ବିଷୟରେ ନିଜେ ଶୈଳବାଳା ତାଙ୍କର ଏକ ଲେଖାରେ ଉଲ୍ଲେଖ କରିଥିଲେ ଯାହା ତତ୍‌କାଳୀନ ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଥିଲା । ଶୈଳବାଳା ଲେଖନ୍ତି, ବିଲାତ ଯିବା ପୂର୍ବରୁ ତାଙ୍କ ପିତା ମଧୁସୂଦନ ଦାସ ନାନା ଉପଦେଶ ଦେବା ମଧ୍ୟରେ ଏହା ମଧ୍ୟ ଆଦିଷ୍ଟ କରିଥିଲେ ଯେ ଇଂଲଣ୍ଡରେ ରାଜାରାଣୀଙ୍କୁ ରାଜ ପରିଷଦରେ ଅତିଥି ଭାବେ ସାକ୍ଷାତ କରିବାର ସୁଯୋଗ ମିଳିଲେ ଓଡ଼ିଆଣୀଙ୍କ ଶାଢ଼ୀ ପିନ୍ଧି କରି ରାଜ ପରିଷଦକୁ ଯିବି ।

ଏହାହିଁ ପ୍ରମାଣ କରେ ମଧୁବାବୁ ନିଜେ ନିଜ ଜାତିର ନିଜ ଦେଶର ପରମ୍ପରା ଏବଂ ସଂସ୍କୃତି ରକ୍ଷା ନିମନ୍ତେ କେତେ ମାତ୍ରାରେ ତତ୍‌ପର ଥିଲେ ଏବଂ ସେହି ଧାରାରେ ତାଙ୍କ ଝିଅ ଶୈଳବାଳାଙ୍କୁ କେତେ ପରିମାଣରେ ଉଦ୍‌ବୁଦ୍ଧ କରି ପାରିଥିଲେ । ଆଜି କାଲିକାର କଥା ଦେଖିଲେ ମନରେ ଅଶେଷ ଦୁଃଖ ଓ ଲଜ୍ୟା ଆସେ । ଭାରତ କଣ ଓଡ଼ିଶାର ସ୍ତ୍ରୀଲୋକମାନେ ଲଣ୍ଡନ ଗଲେ ସେଠିକାର ପୋଷାକ ଫ୍ରକ୍ (frock) ପିନ୍ଧି ବାହାରକୁ ବାହାରିବାର ସଉକ୍‌ରେ ଅନ୍ଧ ହୋଇଯାନ୍ତି ।

ଓଡିଆ ଭାଷାକୁ ରକ୍ଷାକରିବାକୁ ଅନ୍ୟମାନଙ୍କ ସହ ମଧୁବାବୁ ସଂଗ୍ରାମ କରିଥିଲେ । ଓଡିଆ ସାହିତ୍ୟର ଉନ୍ନତି ନିମନ୍ତେ ଗଠିତ "ଉତ୍କଳ ସାହିତ୍ୟ ସମାଜ"ର ସେ ଜଣେ ଆଦି ଅଭିଭାବକ ସଭ୍ୟ ଥିଲେ । ଡ଼ଃ ମାୟାଧର ମାନସିଂହ ତାଙ୍କ "ଓଡିଆ ସାହିତ୍ୟ ଇତିହାସ" ବହିରେ ମଧୁବାବୁଙ୍କୁ ଜଣେ ଉଚ୍ଚକୋଟୀର ଓଡିଆ ସାହିତ୍ୟିକ ଭାବେ ଗ୍ରହଣ କରିଛନ୍ତି । ତେଣୁ ସାହିତ୍ୟ କ୍ଷେତ୍ରରେ ତାଙ୍କ ନାମରେ ପୁରସ୍କାର ଦିଆଯାଇପାରନ୍ତା । ସଂଗୀତର ଉନ୍ନତି ନିମନ୍ତେ ତାଙ୍କ ଘରେ ପ୍ରତି ଶନିବାର ସଂଗୀତ ଆସର ବସାଉଥିଲେ। ତେଣୁ ସଂଗୀତ କ୍ଷେତ୍ରରେ ମଧ ତାଙ୍କ ନାମରେ ପୁରସ୍କାର ଦିଆଯାଇପାରନ୍ତା । ତାଙ୍କ ଯୋଗୁଁ ଓଡିଶାକୁ ରେଳ ଲାଇନ ଆସିଥିଲା । ତାଙ୍କ ଯୋଗୁଁ ହାଇକୋର୍ଟ ବେଞ୍ଚ ଓଡିଶାକୁ ଆସିଲା । ସାମାଜିକ ସ୍ତରରେ ନାନା ପ୍ରକାର ସଂଗଠନ କରି ଉନ୍ନତି ସାଧନ କରିଥିଲେ । ସେ ପ୍ରଥମ କରି କୁଷ୍ଠାଶ୍ରମ ସ୍ଥାପନ କରିଥିଲେ । ତେଣୁ ସାମାଜିକ ସେବା କ୍ଷେତ୍ରରେ ତାଙ୍କ ନାମରେ ପୁରସ୍କାର ଦିଆଯାଇ ପାରନ୍ତା ।

ସର୍ବୋପରି ସର୍ବଭାରତୀୟ ସ୍ତରରେ ସେ ଜଣେ ବିଚକ୍ଷଣ, ବୁଦ୍ଧିମାନ, ଆଇନ ବିଶାରଦ ଓକିଲ ଥିଲେ । ସେ ଜଣେ ଉଚ୍ଚକୋଟୀର ଲଅ ଡ୍ରାଫ୍ଟସ୍ ମ୍ୟାନ ଥିଲେ । ମଧୁବାବୁ ମନ୍ତ୍ରୀ ଥିଲା ବେଳେ "Local Self Government Act" (ମ୍ୟୁନିସିପାଲିଟି ଆକ୍ଟ) ପ୍ରଣୟନ କରିଥିଲେ। Sir Henry Wheeler of England had said, "The Bill Mr.Das had passed had powers in the local bodies to far greater extent than in England", ସେ ଆକ୍ଟ ଆଜି ପର୍ଯ୍ୟନ୍ତ ବଳବତ୍ତର ଅଛି। ତାହା ପ୍ରମାଣ କରେ, ସେ ଜଣେ ଉଚ୍ଚକୋଟୀର ରାଷ୍ଟ୍ରନେତା ଥିଲେ । ତେଣୁ ସର୍ବଭାରତୀୟ ସ୍ତରରେ ଜଣେ ଉଚ୍ଚକୋଟୀର ଓକିଲ କି ନ୍ୟାୟବାନ ବିଚାରପତି, କି ଆପୋଷହୀନ ସ୍ୱଦେଶଭକ୍ତ ବ୍ୟକ୍ତିଙ୍କୁ ତାଙ୍କ ନାମରେ ପୁରସ୍କାର ଦିଆଯାଇ ପାରନ୍ତା ।

କୋରାପୁଟରେ ହେବାକୁ ଯାଉଥିବା କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟକୁ ଯଦି ମଧୁବାବୁଙ୍କ ନାମରେ ନାମକରଣ କରାଯାନ୍ତା, ତେବେ ଅତୀବ ସୁନ୍ଦର ଓ ସୌଭାଗ୍ୟର କଥା ହୁଅନ୍ତା। ଏହା କରିବା ଦ୍ୱାରା ଓଡିଆ ମାନଙ୍କ ଦ୍ୱାରା ମଧୁବାବୁଙ୍କୁ କୃତଜ୍ଞତା ଜଣାଇବା ଓ ଯଥା ଯଥ ଶ୍ରଦ୍ଧାସୁମନ ଦେବା ସଙ୍ଗେ ସଙ୍ଗେ ନିଜେ ଓଡିଆ ମାନେ ମଧ ଗୌରବାନ୍ୱିତ ହୋଇପାରନ୍ତେ ।

ଆଜି ପାର୍ଲାମେଣ୍ଟର ସେଣ୍ଟ୍ରାଲ ହଲରେ ଓଡିଶାର ଦୁଇ ବିଶିଷ୍ଟ ନେତା ମହତାବ ବାବୁ ଏବଂ ବିଜୁବାବୁଙ୍କ ତୈଳଚିତ୍ର ରଖାଯାଇ ପାରିଛି । ସେଥିପାଇଁ ଓଡିଆ ହିସାବରେ ଗର୍ବ କରିବା କଥା । କିନ୍ତୁ ମୋ ମତରେ ଓଡିଆ ଜାତିର ଜନକ ମଧୁବାବୁଙ୍କର ତୈଳଚିତ୍ର ଆଗ ସ୍ଥାପନ କରି ପରେ ଏମାନଙ୍କ ତୈଳଚିତ୍ର ରଖାଯାଇଥିଲେ ଯାହା କରଣୀୟ ଏବଂ ସୁନ୍ଦର ତାହା ହୋଇଥାନ୍ତା ।

ପାର୍ଲିଆମେଣ୍ଟ ସେଣ୍ଟ୍ରାଲ ହଲ୍‌ରେ ମଧୁବାବୁଙ୍କ ଫଟ ରଖିବା ନେଇ ଏବେ ସାଧାରଣରେ ଆଲୋଚନା ହେଉଛି । କେହିଁ କେହି କହନ୍ତି ଓଡ଼ିଶାର ଶ୍ରୀ ରବିରାୟ ବାବୁ ଲୋକସଭାର ବାଚସ୍ପତି ଥିବା ସମୟରେ ସେ ସହଜରେ ମଧୁବାବୁଙ୍କ ଫଟ ସ୍ଥାପନ କରି ଦେଇଥିଲେ ଆଜି ଆମକୁ ଅନ୍ୟ ନିକଟରେ ମୁଣ୍ଡ ଗଡ଼ାଇବାକୁ ପଡୁ ନଥାନ୍ତା ।

ଏହାର ଉତ୍ତରରେ କେହି କେହି କହନ୍ତି ରବିବାବୁ ଜଣେ ସାମ୍ୟବାଦୀ ସୋସିଆଲିଷ୍ଟ ନେତା ଥିଲେ । ସେ ମହାଭାରତୀୟ ଭାବ ଓ ଅନ୍ତର୍ଜାତିକ ସାମ୍ୟବାଦ ଧାରାରେ ଚିନ୍ତାଶୀଳ ଥିଲେ । ତେଣୁ ସେ ଆଞ୍ଚଳିକ ଭାବଧାରାରେ ପ୍ରଭାବିତ ନ ଥିଲେ । ତେଣୁ ମଧୁବାବୁଙ୍କ ଫଟୋ ରଖିବା ପାଇଁ ସେ ଚିନ୍ତା କରି ନଥିଲେ ।

ଅନ୍ୟମାନେ ନିଜ ନିଜ ମତ ବ୍ୟକ୍ତ କଲାପରି ଏ ନିର୍ବୋଧ ଲେଖକଟି ତାର ମତ ପ୍ରକାଶ କରିବାକୁ ଚାହୁଁଛି । ସେଥିପାଇଁ ଲେଖିବା ପୂର୍ବରୁ ନିଜର ତ୍ରୁଟି ନିମନ୍ତେ କ୍ଷମା ମାଗି ନେଉଛି । ବ୍ୟକ୍ତିର ଯେପରି ପରିଚୟ (identity) ଥାଏ, ସେହିପରି ସାଂସଦମାନଙ୍କର ମଧ୍ୟ ପରିଚୟ (identity) ଥାଏ । କେଉଁ ସାଂସଦ କେଉଁ ରାଜ୍ୟର ହିସାବରେ ପରିଚିତ ହୋଇଥାନ୍ତି । ସେଥିପାଇଁ ନିଶ୍ଚୟ ରବିବାବୁଙ୍କୁ ଓଡ଼ିଶାର ସାଂସଦ ଭାବରେ ପରିଚିତ ହେବାକୁ ପଡ଼ିଥିବ ଓଡ଼ିଶା ରାଜ୍ୟ ନ ଥିଲେ ସେ ସଂସଦକୁ ନିର୍ବାଚିତ ହୋଇ ଯାଇପାରି ନଥାନ୍ତେ । ବର୍ତ୍ତମାନ ଓଡ଼ିଶା ରାଜ୍ୟ ବାହାରେ ଅନ୍ୟ ରାଜ୍ୟରେ ଲକ୍ଷ ଲକ୍ଷ ବହୁ ଓଡ଼ିଆ ବାସ କରୁଛନ୍ତି । ସେମାନଙ୍କ ମଧ୍ୟରୁ କେତେଜଣ ସେସବୁ ରାଜ୍ୟମାନଙ୍କରୁ

ସଂସଦକୁ ନିର୍ବାଚିତ ହୋଇଛନ୍ତି ତାହା ବିଚାରକୁ ନେଲେ ଓଡ଼ିଶା ନ ଥିଲେ ଓଡ଼ିଆ କେହି ସଂସଦକୁ ଯିବା ସମ୍ଭବ ହୋଇଥାନ୍ତା କି ନାହିଁ ବିଚାର୍ଯ୍ୟ । ତେଣୁ ରବିବାବୁଙ୍କର ମାତୃଭୂମି ରାଜ୍ୟ ଓଡ଼ିଶା ଥିବାରୁ ସେ ସଂସଦକୁ ଯାଇଥିଲେ ଏବଂ ବାଚସ୍ପତି ହୋଇଥିଲେ । ଜଗନ୍ନାଥ ମହାପ୍ରଭୁଙ୍କ କୃପାରୁ ମଧୁବାବୁ ଓଡ଼ିଶାରେ ଜନ୍ମ ନ ହୋଇଥିଲେ ଓଡ଼ିଶା ରାଜ୍ୟ ଆଜି ନଥାନ୍ତା ।

ତେଣୁ ରବିବାବୁ ନିଜ ସ୍ଥିତି କଥା ଭୁଲି, ନିଜ ପରିଚୟ କଥା ଭୁଲି, ନିଜ ମାତୃଭୂମି କଥା ଭୁଲି ମହାଭାରତୀୟ ଭାବ କିମ୍ବା ଅନ୍ତର୍ଜାତୀୟ ଭାବନାରେ ଉଦ୍‌ବେଳିତ ହୋଇ ସାମ୍ୟବାଦ ନୀତି ପ୍ରଚାର କଲେ ତାହାର ପ୍ରଭାବ ଅନ୍ୟ ଉପରେ କେତେ ଦୂର ପଡ଼ିବ ତାହା ବିଚାର କରିବା କଥା । କାହା ଆଗରେ କେହି କିଛି ପ୍ରଚାର କଲେ ସେ ଆଗ ପଚାରି ବୁଝିବ କିଏ ସେ । ଦେଶ ଭିତରେ ପ୍ରଚାରିବ କେଉଁ ରାଜ୍ୟର । ଦେଶ ବାହାରେ ପଚାରିବେ କେଉଁ ଦେଶର । ଭାରତ କେତେଗୁଡ଼ିଏ ରାଜ୍ୟର ସଂଯୁକ୍ତ ଏକ ରାଷ୍ଟ୍ର । ତେଣୁ ଦେଶ ଭିତରେ ଭାରତୀୟ କହିଲେ କିଛି ଅର୍ଥ ନାହିଁ । ତେଣୁ ଦେଶ ମଧ୍ୟରେ ନିଜର ସ୍ଥିତି ରାଜ୍ୟ ସ୍ତରରୁ ସୁଦୃଢ଼ ନକରି କେବଳ ମହାଭାରତୀୟ ଭାବରେ କୌଣସି କାର୍ଯ୍ୟ ହେଲାପରି ସମ୍ଭବ ନୁହେଁ । ମୁମ୍ବାଇରେ ଆଜି ଉତ୍ତର ଭାରତୀୟ ବିପଦ୍‌ଗ୍ରସ୍ତ, ଆସାମରେ ବିହାରୀମାନେ ବିପଦ୍‌ଗ୍ରସ୍ତ ।

ତେଣୁ ଆମର ମାତୃଭୂମିକୁ ଭୁଲି, ଯେଉଁ ବ୍ୟକ୍ତି ଆମ ପାଇଁ ଆମକୁ ଏକ ମାତୃଭୂମି ଦେଇଗଲେ ତାଙ୍କୁ କୃତଜ୍ଞତା ନ ଜଣାଇ ତାଙ୍କୁ ଭୁଲି ଯିବା କଣ ଏକ ସ୍ପୃହଣୀୟ କର୍ତ୍ତବ୍ୟ ହୋଇପାରେ ।

ଆନ୍ଧ୍ରବାସୀ ପି: ଶ୍ରୀରାମୁଲୁଙ୍କୁ ପିତା ତୁଲ୍ୟ ପୂଜା କରନ୍ତି । ତାହା କଣ ଖାଲି ଆଞ୍ଚଳିକ ଭାବ । ନିକଟ ଅତୀତରେ ଆସାମବାସୀଙ୍କ ଦାବିରେ ଆସାମର ଜଣେ ନେତାଙ୍କ ଫୋଟ ପାର୍ଲାମେଣ୍ଟ ସେଣ୍ଟ୍ରାଲ ହଲରେ ସ୍ଥାପନ କରାଗଲା । ତାହା କଣ ଖାଲି ଆଞ୍ଚଳିକ ଭାବ । ପଶ୍ଚିବଙ୍ଗରେ ସି.ପି.ଏମ୍. ପାର୍ଟିର ନେତାମାନେ କଣ ମହାଭାରତୀୟ ଭାବରେ ଭାବିତ ନୁହଁନ୍ତି । ସେମାନେ କଣ ଅନ୍ତର୍ଜାତୀୟ କମ୍ୟୁନିଷ୍ଟ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ନୁହଁନ୍ତି । କିନ୍ତୁ ଆଜି ସେମାନେ ତାଙ୍କର ଦିବଂଗତ ନେତା ଜ୍ୟୋତିବସୁଙ୍କୁ ଅତି ଉଚ୍ଚଆସନରେ

ବସାଇ ରାଜ୍ୟରେ ଏବଂ ଭାରତରେ ତାଙ୍କର ସ୍ମୃତି ପ୍ରତିଷ୍ଠା କରିବାର ଚେଷ୍ଟା କରୁଛନ୍ତି । ତାହା କଣ ଖାଲି ଆଞ୍ଚଳିକ ଭାବ । ସଂଯୁକ୍ତ ରାଷ୍ଟ୍ର ଭାରତ ବର୍ଷର ପ୍ରତ୍ୟେକ ରାଜ୍ୟର ମୁଖ୍ୟ ଦେଶପ୍ରେମୀଙ୍କୁ ପାର୍ଲିଆମେଣ୍ଟର ସେଣ୍ଟ୍ରାଲହଲରେ ସ୍ଥାନିତ କରିବା ବରଂ ଏକ କର୍ତ୍ତବ୍ୟ । ତେଣୁ ଓଡ଼ିଶା ରାଜ୍ୟ ଗଠନ କର୍ତ୍ତା ଏବଂ ଭାରତର ସ୍ୱାଧୀନତା ଏବଂ ଉନ୍ନତି କଳ୍ପେ ଥିବା ଚିନ୍ତାଶୀଳ ମଧୁବାବୁଙ୍କ ଫଟ ରଖିବା ଆଞ୍ଚଳିକବାଦ ଭାବବେ ଗ୍ରହଣ ଯୋଗ୍ୟ ନୁହେଁ ।

ଓଡିଶାର ରାଜନୈତିକ ନେତୃବୃନ୍ଦ ବିଶେଷ କରି ବିଧାୟକ, ସାଂସଦ ଓ ମନ୍ତ୍ରୀ ମାନଙ୍କର ମଧୁବାବୁଙ୍କୁ ଲୋକ ଲୋଚନକୁ ନ ଆଣି ଓଡିଶା ଇତିହାସରୁ ବାଦ୍ ଦେବା ନିମନ୍ତେ ଚେଷ୍ଟା ଓ ଧାରାବାହିକ କାର୍ଯ୍ୟଧାରାକୁ ସଚେତନ ଓଡିଶାବାସୀ ଦେଖିନଦେଖିଲା ପରି ନୀରବରେ ନିର୍ଲିପ୍ତଭାବେ ସହ୍ୟକରିଯିବା ବିଷୟ ପ୍ରତି ଦୃଷ୍ଟି ଦେଲେ, ଏପରି ଏକ ସ୍ଥାଣୁତା ଗ୍ରସ୍ତ ଅକୃତଜ୍ଞ ଓଡିଆ ଜାତିର ସନ୍ତାନ ବୋଲି ଭାବିଲା ବେଳକୁ ନିଜକୁ ଲଜ୍ଜା ଆସୁଛି ।

ଏହିସବୁ ଦୃଷ୍ଟିରୁ ମୁଁ ଅନୁଭବ କରେ, ବୀରସୁରେନ୍ଦ୍ର ସାଏ କିଛି ମାତ୍ରାରେ ଅବହେଳିତ ହୋଇଥିଲେ ହେଁ ମଧୁବାବୁ ଯୋଜନା ବଦ୍ଧଭାବେ ଅବହେଳିତ, ଉପେକ୍ଷିତ, ବିସ୍ମୃତ, ପରିତ୍ୟକ୍ତ ଏବଂ ପ୍ରତ୍ୟାଖ୍ୟାତ । ଆଜି ଆଶାଅଛି, ଯେଉଁ ଉତ୍କଳ ଜନନୀଙ୍କ କୋଳରେ ମହାପ୍ରଭୁ ଜଗନ୍ନାଥ ଦେବ ପ୍ରତିଭାତ ଏବଂ ଯେଉଁ ଜଗନ୍ନାଥଙ୍କ ବିପକ୍ଷରେ ବିଦେଶୀ ଶାସକଙ୍କ କୁଚକ୍ରାନ୍ତକୁ ମଧୁବାବୁ ପଣ୍ଡକରି ଦେଇଥିଲେ, ସେହି ମହାପ୍ରଭୁଙ୍କ କୃପାରୁ ଉତ୍କଳ ଜନନୀଙ୍କ କୋଳରେ ନିଶ୍ଚୟ ତାଙ୍କର ଏକ ସୁପୁତ୍ର ଆବିର୍ଭୂତ ହେବ. ଯିଏ ଜନନୀଙ୍କୁ ଶୃଙ୍ଖଳମୁକ୍ତ କରିଥିବା ଗରିମାମୟ ମଧୁବାବୁଙ୍କୁ ଉପଯୁକ୍ତ ଶ୍ରଦ୍ଧା ଏବଂ ସମ୍ମାନ ଦେବାକୁ ଆଗଭର ହେବ ।

ମଧୁବାବୁ ନିଜର କୌଣସି ଦାୟାଦ ଛାଡି ଯାଇ ନଥିଲେ । ସେ ନିଶ୍ଚୟ ଭାବିଥିବେ ନୂତନ ଜୀବନ୍ୟାସ ଦେଇ ଯେଉଁ ନୂତନ ଓଡିଆ ଜାତି ସୃଷ୍ଟି କରି ଗଲେ ଏବଂ ସଗର୍ବେ ଦଣ୍ଡାୟମାନ ହେବା ପାଇଁ ଯାହାଙ୍କ ପାଇଁ ନୂତନ ମାତୃଭୂମିର ପୀଠ ଗଠନ କରିଗଲେ, ସେମାନେ ତାଙ୍କର ସ୍ମୃତି ଚାରଣ କରିବେ । ଛାତ୍ର ମାନଙ୍କୁ ତାଙ୍କ ଜୀବନର ଶେଷୋକ୍ତି ଥିଲା – "ମନେ ରଖିଥିବ ଜଣେ

ଓଡିଆ ଥିଲା" । ତାହାହିଁ ତାଙ୍କ ସ୍ପଷ୍ଟ ନୂତନ ଓଡିଆ ଜାତିକୁ ସୂଚାଇ ଦିଏ, ସେହିଁ ଆଜିର ଓଡିଆଙ୍କର ପୂର୍ବଜ ଓ ଏହି ଗୋଟିଏ ବାକ୍ୟରେ କହିଯାଇଛନ୍ତି ପୂର୍ବ ପୁରୁଷଙ୍କ ସ୍ମୃତି ଜାଗରୁକ କରି ରଖିବା ପରବର୍ତ୍ତୀ ବଂଶଧରଙ୍କ କର୍ତ୍ତବ୍ୟ ।

ଆଜିକାଲିକାର ନେତାମାନେ ଅନ୍ୟର ଦୟାରେ ମନ୍ତ୍ରୀପଦଟିଏ ପାଇଗଲେ ଉତ୍‌ଫୁଲ୍ଲିତ ହୋଇ ଲକ୍ଷ୍ମୀଠାକୁରାଣୀଙ୍କ ପ୍ରିୟ ଆସନ ପଦ୍ମଫୁଲ ଦ୍ୱାରା ନିଜ ଚାମଚାମାନଙ୍କ ଦ୍ୱାରା ବିଛା ହୋଇଥିବା ରାସ୍ତାରେ ପଦ୍ମଫୁଲ ଉପରେ ଗର୍ବରେ ପାଦ ଥୋଇ ଚାଲି ଆତ୍ମତୃପ୍ତି ଲାଭ କରନ୍ତି । କିନ୍ତୁ ପର ମୁହୂର୍ତ୍ତରେ ଠାକୁରାଣୀଙ୍କ କୋପରୁ ମନ୍ତ୍ରୀପଦରୁ ବହିଷ୍କୃତ ହୋଇଗଲେ ମର୍ମାହତ ହେବାଛଡ଼ା ଅନ୍ୟ କିଛି କରାମତି ନିଜର ନ ଥାଏ । ତଥାପି ସେମାନେ ନିଜେ ମଧ୍ୟ ନିଜର ପ୍ରଚାର ପାଇଁ ନାନା ଉପାୟମାନ କରିଥାନ୍ତି ।

କିନ୍ତୁ ମଧୁବାବୁ ନିଜ ଯୋଗ୍ୟତା ଏବଂ ବଡ଼ିମା ପାଇଁ କେବେ ଗର୍ବ କରି ନାହାନ୍ତି କି ଅନ୍ୟ ଦ୍ୱରା ପ୍ରଶଂସିତ ହେବାକୁ ଚାହିଁ ନାହାନ୍ତି ବରଂ ଘୃଣା କରିଛନ୍ତି । ତାଙ୍କ ମତରେ ଜଣକର ଯୋଗ୍ୟତା ଏବଂ ବଡ଼ିମା ତାର ଉତ୍ତର ପୁରୁଷ ବିଚାର କରିବେ । ତାଙ୍କର ନିରହଙ୍କାର ସ୍ୱଭାବ ଏବଂ ନିରଭିମାନ ହୃଦୟର ମହିମାନ୍ୱିତ ଚରିତ୍ରକୁ ହୃଦୟଙ୍ଗମ କରିବା ନିମନ୍ତେ ଗୋଟିଏ ଘଟଣାର ଅବତାରଣା କରୁଛି ସୁରେନ୍ଦ୍ର ମହାନ୍ତିଙ୍କ ଲିଖିତ କୁଳ ବୃଦ୍ଧ ପୁସ୍ତକର ୩୨୮ ପୃଷ୍ଠାରୁ । ...... ୧୯୩୧ ସାଲରେ ପୂର୍ଣ୍ଣ ହେଉଥିଲା ମଧୁସୂଦନଙ୍କ ଓକିଲାତିର ୫୦ତମ ବର୍ଷ । ପ୍ରକାରାନ୍ତରେ ଓକିଲାତି ବ୍ୟବସାୟରେ ଓଡ଼ିଆମାନଙ୍କର ପ୍ରବେଶ ଓ ପ୍ରତିଷ୍ଠାର ଅର୍ଦ୍ଧଶତାବ୍ଦୀ । ସେଥିପାଇଁ କଟକ ଓକିଲ ସଂଘ ପ୍ରସ୍ତାବ କରିଥିଲେ ସୁବର୍ଣ୍ଣଜୟନ୍ତୀ ସମାରୋହରେ ମଧୁସୂଦନଙ୍କୁ ସମ୍ବର୍ଦ୍ଧନା ଜଣାଇବା ନିମିତ୍ତ । ସେଥିପାଇଁ ଚିନ୍ତାମଣି ଆଚାର୍ଯ୍ୟ, ପାରେଶ୍ୱର ମହାନ୍ତି ଏବଂ ଅନେକ ଜୁନିୟର ଓକିଲ ଆସିଥିଲେ ମଧୁବାବୁଙ୍କ ନିକଟକୁ ।

''ଚିନ୍ତାମଣି ବାବୁ କହିଲେ । ଆପଣଙ୍କ ସ୍ୱୀକୃତି ପାଇଲେ, ଆମ୍ଭେମାନେ ସୁବର୍ଣ୍ଣ ଜୟନ୍ତୀ ପାଇଁ ଆୟୋଜନ କରିବୁ ।''

ମଧୁସୂଦନ କ୍ଷଣକାଳ ନୀରବ ରହିଲେ । ସେ ହଠାତ୍ ଫେରି ଯାଇଥିଲେ, ଅର୍ଦ୍ଧଶତାବ୍ଦୀ ପୂର୍ବେ ୧୮୮୧ ସାଲକୁ, ଯେଉଁଦିନ ସେ କଲିକତା ଛାଡ଼ି କଟକ ଆସନ୍ତି ଏଠାରେ ଓକିଲାତି ପାଇଁ ।

ମଧୁସୂଦନ କହିଲେ, "ଓଡ଼ିଆ ଜାତିର ମୁଁ ପ୍ରଥମ ଆଡ଼ଭୋକେଟ । କିନ୍ତୁ ମୁଁ ଯେତେବେଳେ ପ୍ରାକଟିସ୍ ପାଇଁ କଟକ ଆସିଲି, ସେତେବେଳେ ଏ ବ୍ୟବସାୟରେ ଓଡ଼ିଆ ମାନଙ୍କର ସ୍ଥାନ ନଥିଲା । ଆଜି କିନ୍ତୁ ପାଟନାଠାରୁ କଟକ ପର୍ଯ୍ୟନ୍ତ ଅନେକ ଓଡ଼ିଆ ଏ କ୍ଷେତ୍ରରେ ସୁପ୍ରତିଷ୍ଠିତ ।"

''ପାରେଶ୍ୱର ଟିପ୍‌ପଣୀ କଲେ, ସେଥିପାଇଁ ଇଏ ତ କେବଳ ଆପଣଙ୍କ ସୁବର୍ଣ୍ଣ-ଜୟନ୍ତୀ ହେବ ନାହିଁ, ଇଏ ହେବ ମଧ୍ୟ ଓକିଲାତି କ୍ଷେତ୍ରରେ ଓଡ଼ିଆ ଜାତିର ସୁବର୍ଣ୍ଣ-ଜୟନ୍ତୀ ।''

''କ୍ଷଣକାଳ ନୀରବ ରହି ମଧୁସୂଦନ ଉତ୍ତର ଦେଲେ - ମୋତେ ଏଥିରୁ ବାଦ୍‌ଦିଅ ପାରେଶ୍ୱର । ମୋ ସମ୍ବନ୍ଧରେ ଫକୀରମୋହନ (ସେନାପତି), ଗୋଦାବରୀଶ ମିଶ୍ର, ନନ୍ଦକିଶୋର ବଳ, ଗଙ୍ଗାଧର ମେହେର, ପଦ୍ୟ ଲେଖିଛନ୍ତି । ମୁଁ ତ ଦୁର୍ବଳଚିତ୍ତ, ଏଥିରେ ପ୍ରଶଂସିତ ହେଲି ବୋଲି ଅନୁଭବ କରୁଛି । କିନ୍ତୁ ପ୍ରକୃତରେ ଏପରି ହେବା ଉଚିତ ନୁହେଁ । ଯେଉଁ ଯୁଗରେ ଜଣେ ବ୍ୟକ୍ତି ଜନ୍ମ ଗ୍ରହଣ କରିଛି, ସେହି ଯୁଗର ଇତିହାସରେ ତାହାର ସ୍ଥାନ ନିର୍ଣ୍ଣିତ ହେବା ଉଚିତ ନୁହେଁ । ଲୋକେ ତାଙ୍କୁ ଦେଖୁଛନ୍ତି , ଚିହ୍ନିଛନ୍ତି, ତାଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିଛନ୍ତି । ହୁଏତ ତାଙ୍କୁ ଦେଖି ଚିହ୍ନି ଘୃଣା କରିଛନ୍ତି, ପ୍ରଶଂସା କରିଛନ୍ତି ଅଥବା ପୂଜା କରିଛନ୍ତି । ତାଙ୍କର ଦୋଷ ଦୁର୍ବଳତା ଅଥବା ସଦ୍‌ଗୁଣକୁ ସେମାନେ ଆଖି ଆଗରେ ଦେଖିଛନ୍ତି, ଅନୁଭବ କରିଛନ୍ତି । ଫଳରେ ଘୃଣା, ପ୍ରଶଂସା, ଈର୍ଷା ପ୍ରଭୃତି ଦ୍ୱାରା ଲୋକଙ୍କ ଦୃଷ୍ଟି କଳୁଷିତ ହୋଇ ଯାଇଛି । ଏଥିରେ ମନୁଷ୍ୟର ପ୍ରକୃତ ମୂଲ୍ୟାୟନ ସମ୍ଭବ ନୁହେଁ । ପରବର୍ତ୍ତୀ ଯୁଗର ଲୋକେ କେବଳ ଏହି ମୂଲ୍ୟାୟନ ଠିକ୍ ଭାବରେ କରିପାରିବେ । ନେତାର ସ୍ୱଯୁଗର ଲୋକଙ୍କର ଚକ୍ଷୁ ଯେଉଁ ସବୁ କାରଣରୁ କଳୁଷିତ ହୋଇଥାଏ ତାହା ଏମାନଙ୍କର ପକ୍ଷେ ସମ୍ଭବ ନୁହେଁ । ଏମାନେ ତାଙ୍କର ସମ୍ପର୍କରେ ଆସି ନାହାନ୍ତି କି ଘୃଣା କି ପ୍ରଶଂସା ଦ୍ୱାରା କଳୁଷିତ ହୋଇଥିବା ଚକ୍ଷୁରେ ତାଙ୍କୁ ଦେଖି ନାହାନ୍ତି । ସେମାନେ ବିଚାର କରି ଦେଖିବେ, ଏହି ଲୋକଟି ଉପରେ ଜାତି କି ଗୁରୁ ଦାୟିତ୍ୱ ନ୍ୟସ୍ତ କରିଥିଲା, ତାଙ୍କୁ କି କ୍ଷମତା ଅର୍ପଣ କରିଥିଲା, ବିପଦ ଓ ଧ୍ୱଂସ ସମ୍ମୁଖରେ ତାହାର ନେତୃତ୍ୱକୁ ଚାହିଁଥିଲା କି ନାହିଁ । ବିଶ୍ୱାସ ରଖିଥିଲା କି ନାହିଁ, ଏହାର ନିଷ୍ପତ୍ତି ଉପରେ ଜାତିର ଇତିହାସର ନିତି ନିର୍ଭର କରୁଥିଲା କି ନାହିଁ - ଏ ସବୁ ବିଷୟ ପରବର୍ତ୍ତୀ ଯୁଗରେ ଲୋକଙ୍କ ଦ୍ୱାରା ନିର୍ଣ୍ଣିତ ନ ହେବା ପର୍ଯ୍ୟନ୍ତ କୌଣସି ଲୋକର ସ୍ଥାନ ଇତିହାସରେ ନିର୍ଣ୍ଣୟ କରିବା ଅନୁଚିତ ।"

''ନିଃସଙ୍କୋଚ ଆତ୍ମପ୍ରଚାର ଓ ପ୍ରଚାର କୌଶଳ ମାଧ୍ୟମରେ ଆତ୍ମପ୍ରତିଷ୍ଠାର ଯୁଗରେ ସମ୍ବର୍ଦ୍ଧନା ପାଇଁ ମଧୁସୂଦନଙ୍କ ଅନିଚ୍ଛା ଓ ଅନାସକ୍ତି, ଚିନ୍ତାମଣି ପ୍ରମୁଖଙ୍କୁ ବିସ୍ମିତ କରିଦେଲା । ମାତ୍ର ମଧୁସୂଦନଙ୍କର ଏହା ଏକ ଖିଆଲ ନଥିଲା - ଏକ ନିର୍ଦ୍ଦିଷ୍ଟ ଜୀବନ - ଦର୍ଶନ ଉପରେ ମଧୁସୂଦନଙ୍କ ଏ ଅନାସକ୍ତି ଥିଲା ଆଧାରିତ । ମହାକାଳ ହିଁ ସମସ୍ତଙ୍କର ଜୀବନ ମୂଲ୍ୟାଙ୍କନ କରିବ, ସେଦିନ ମହାକାଳ କଣ ଭୃକ୍ଷେପ କରିବ ସ୍ତାବକ ମାନଙ୍କର ଏଇ ସୁବର୍ଣ୍ଣ ଜୟନ୍ତୀ କୁ ? ''

ସେ ଓଡିଶାରେ ପ୍ରଥମ ଇଂରେଜୀ ଖବର କାଗଜ (The Oriya) ପ୍ରକାଶ କରି ସାମ୍ବାଦିକତା ମାଧ୍ୟମରେ ଓଡିଆ ଜାତିର ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବନା ଜାଗରିତ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ସେ ଖବର କାଗଜଟି ପ୍ରଚଳନ କରି ରଖିବା ପାଇଁ କୌଣସି ଯୋଗ୍ୟ ଗୁଣଗ୍ରାହୀ ତାଙ୍କ ପାଖରେ ନଥିଲେ । ସେଥିପାଇଁ ଅନ୍ୟମାନଙ୍କ ପରି ତାଙ୍କ ଅନ୍ତେ ତାଙ୍କ ନାମର ଜୟ ଗାନ କରିବାକୁ କିଛି ମାଧ୍ୟମ ନାହିଁ । ତଥାପି ତଥାକଥିତ ରାଜନେତାଙ୍କ ବ୍ୟତୀତ ସାଧାରଣ ଓଡିଆଙ୍କ ପ୍ରାଣରେ ସେ ଜାଗ୍ରତ । ଭିନ୍ନ ଭିନ୍ନ ସ୍ଥାନରେ ସର୍ବ ସାଧାରଣଙ୍କ ଦ୍ୱାରା ସ୍ୱତଃ ପ୍ରବୃତ୍ତ ଭାବେ ଯେପରି ମଧୁବାବୁଙ୍କ ମୂର୍ତ୍ତିମାନ ପ୍ରତିଷ୍ଠା କରାଯାଇ ମଧୁବାବୁଙ୍କ ସ୍ମୃତିକୁ ଉଜ୍ଜୀବିତ କରାଯାଉଛି, ସେଥିରୁ ପ୍ରତୀୟମାନ ହୁଏ, ଶତ ଚକ୍ରାନ୍ତ ସତ୍ତ୍ୱେ ମଧୁବାବୁ ସର୍ବ ସାଧାରଣଙ୍କ ହୃଦୟରୁ ବିସ୍ମୃତ ହେବା ପରିବର୍ତ୍ତେ ଶତ ସିଂହର ସାହସ ସେମାନଙ୍କ ପ୍ରାଣରେ ସଞ୍ଚାର କରୁଛନ୍ତି । ସେଥିରୁ ମଧ ଅନୁଭୂତ ହୁଏ ମଧୁବାବୁଙ୍କ ସୃଷ୍ଟ ନୂତନ ସ୍ୱତନ୍ତ୍ର ଓଡିଶା ରାଜ୍ୟର ମାତୃଭୂମି ଉପରେ ଯେଉଁ କେତେଜଣ ସ୍ୱାଭିମାନୀ ଓଡିଆ ମୁଣ୍ଡ ଟେକି ଠିଆ ହୋଇଛନ୍ତି, ସେମାନଙ୍କ ପ୍ରାଣରେ ମଧୁବାବୁଙ୍କ ନାମର ବୈଜୟନ୍ତୀ ଅଦୃଶ୍ୟଭାବେ ହେଲେ ମଧ ସଗର୍ବେ ଉଡ୍ଡୀୟମାନ ।

ଏହି ପରିପ୍ରେକ୍ଷୀରେ ମନକୁ ଆସେ ବାବୁ ଶ୍ରୀବଲ୍ଲଭ ପାଣିଗ୍ରାହୀଙ୍କ ପରି ବିଚାରଶୀଳ ବ୍ୟକ୍ତି ଆଜି ମଧ ଉତ୍କଳ ଜନନୀଙ୍କ କୋଳରେ ଜାଗ୍ରତ, ଯିଏ ଓଡିଆ ଜାତିର ପୂଜ୍ୟ ସୁରେନ୍ଦ୍ର ସାଏଙ୍କ ଅବହେଳା ପ୍ରତି ଦୃଷ୍ଟି ରଖି ତାଙ୍କର ଉପଯୁକ୍ତ ପୂଜାର ପ୍ରାପ୍ୟ ନିମନ୍ତେ ଉତ୍ସାହିତ ଏବଂ ଉତ୍କଣ୍ଠିତ । ମଧୁବାବୁଙ୍କ ସୃଷ୍ଟ ଓଡିଶାରୁ ନିର୍ବାଚିତ ବିଧାୟକ,ସାଂସଦ ଏବଂ ମନ୍ତ୍ରୀ ମାନଙ୍କ ମଧ୍ୟରୁ ପାଣିଗ୍ରାହୀ ବାବୁଙ୍କ ପରି ଯଦି କେତେକ ଉତ୍ସାହୀ ଓ ଆଗ୍ରହୀ ବିଧାୟକ, ସାଂସଦ ମନ୍ତ୍ରୀ ଓ ଚିନ୍ତାଶୀଳ, ଆଗ୍ରହୀ ଓଡିଆ ବ୍ୟକ୍ତି ବିଶେଷ ଆନ୍ତରିକ ଚେଷ୍ଟା କରନ୍ତେ, ତେବେ ନିଶ୍ଚୟ ମଧୁବାବୁଙ୍କୁ ଯଥାଯଥ ଶ୍ରଦ୍ଧା ଓ ସମ୍ମାନ ଏ ଜାତି ତରଫରୁ ଦିଆଯାଇ ପାରନ୍ତା । ମଧୁବାବୁଙ୍କ ଜନ୍ମ ପୀଠ ସତ୍ୟଭାମାପୁର ଓ

ତାଙ୍କ କର୍ମକ୍ଷେତ୍ର କଟକରେ ଜାତୀୟ ସ୍ମାରକୀ ପ୍ରତିଷ୍ଠା କରାଯାଇ ପାରନ୍ତା। ପାର୍ଲାମେଣ୍ଟର ସେଣ୍ଟ୍ରାଲ ହଲରେ ତାଙ୍କ ତୈଳଚିତ୍ର ସ୍ଥାପିତ ହୋଇ ପାରନ୍ତା । ଦିଲ୍ଲୀର ଏକ ରାଜ ରାସ୍ତା ତାଙ୍କ ନାମରେ ନାମିତ ହୋଇ ପାରନ୍ତା । ଓଡିଶାର ପ୍ରତି କ୍ଷେତ୍ରରେ ତାଙ୍କ ସ୍ମୃତି ଉଚ୍ଚାଙ୍ଗସ୍ୱରରେ ନିନାଦିତ ହୋଇପାରନ୍ତା । ପାଠ୍ୟକ୍ରମର ପ୍ରତିସ୍ତରରେ ମଧୁବାବୁଙ୍କ ବିଷୟ ସ୍ଥାନିତ କରାଯିବାଦ୍ୱାରା ଛାତ୍ରମାନଙ୍କ ଜ୍ଞାତସାରକୁ ଆଣି ମଧୁବାବୁଙ୍କ ପରି ଦେଶପ୍ରାଣ ନାଗରିକ ହେବାପାଇଁ ପ୍ରେରଣା ଦିଆଯାଇ ପାରନ୍ତା । ରାଜ୍ୟର ଏବଂ ସର୍ବଭାରତୀୟ ସ୍ତରରେ ପୁରସ୍କାରମାନ ତାଙ୍କ ନାମରେ ଦିଆଯାଇ ପାରନ୍ତା ଓ ଅନେକ କିଛି ସକାରତ୍ମକ କାର୍ଯ୍ୟ କରାଯାଇ ପାରନ୍ତା । ଏହା ହେଲେ ପିଲାଏ ଆଜି ଯେଉଁ ପ୍ରଶ୍ନ ପଚାରୁଛନ୍ତି "ମଧୁବାବୁ କିଏ ?" ତାହା ଶୁଣିବାକୁ ମିଳନ୍ତାନାହିଁ ଏବଂ ସେ ପ୍ରକାର ପ୍ରଶ୍ନ ଆଉନଥାନ୍ତା ପ୍ରାଣକୁ ବିନ୍ଧିବା ପାଇଁ ।

ପୋଟି ଶ୍ରୀ ରାମଲୁ ମରଣାନ୍ତକ ଅନସନ ଥରେ କରି ଆନ୍ଧ୍ରପ୍ରଦେଶ ଗଠନ କରିଥିବାରୁ ଆଜି ସେ ଆନ୍ଧ୍ରର ଘରେ ଘରେ ପୂଜିତ । ମଧୁବାବୁ ଓଡିଶା ଗଠନ କରିବାକୁ ନିଜକୁ ତିଳ ତିଳ କରି ଆଜୀବନ ଆତ୍ମାହୁତି ଦେଇ ଓ ପ୍ରତିଦିନ ମରି ବୃଦ୍ଧ ବୟସରେ ଭଗ୍ନ ସ୍ୱାସ୍ଥ୍ୟ ନେଇ ଓଡିଆ ଭାଷାଭାଷୀ ଅଞ୍ଚଳ ଗୁଡିକର ପୁନର୍ମିଶ୍ରଣ କାର୍ଯ୍ୟରେ ୮୬ ବର୍ଷ ବୟସ ଯାବତ୍ ଲାଗି ଓଡିଶା ଗଠନ କରିଥିଲେ । ଆନ୍ଧ୍ରବାସୀଙ୍କ ପରି ଯଦି ଓଡିଆବାସୀ ମଧୁବାବୁଙ୍କୁ ପୂଜା କରିପାରନ୍ତି, ତେବେ ହୁଏତ ଅକୃତଜ୍ଞତାର ଦୋଷରେ ଅଭିଶପ୍ତ ହୋଇ କେନ୍ଦ୍ର ସରକାରଙ୍କ ଦ୍ୱାରା ଅବହେଳିତ, ଲାଞ୍ଛିତ ଓ ଦାରିଦ୍ର୍ୟ କଷାଘାତରେ ନିଷ୍ପେଷିତ ହେବା ଯନ୍ତ୍ରଣାରୁ ଏ ଓଡିଆ ଜାତି ମୁକ୍ତ ହୋଇ ବିକାଶ ପଥରେ ଅଗ୍ରସର ହୋଇ ପାରନ୍ତା ।

ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣରେ ଏତିକି ପ୍ରାର୍ଥନା – ଏ ଜାତି ଏହା କରିବାକୁ ସକ୍ଷମ ହେଉ ।

***ଜୟ ହିନ୍ଦ୍ ।***

***ବନ୍ଦେ ଉତ୍କଳ ଜନନୀ,***





ସଚ୍ଚିଦାନନ୍ଦ ଦାସ ବାବୁ ଅଦ୍ୱୈତ ଚରଣ ଦାସଙ୍କ ପୁତ୍ର । ଅଦ୍ୱୈତ ବାବୁ କଲିକତାରୁ ଏମ୍.ଏ., ଲଅ ପାଶ କରି ୧୯୨୦ ମସିହାରେ କଟକରେ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କର ଜୁନିୟର ଭାବରେ ଓକିଲାତି ଆରମ୍ଭ କଲେ । ସ୍ୱାମୀ ବିଚିତ୍ରାନନ୍ଦ ମଧୁବାବୁଙ୍କର ଜୁନିୟର ଭାବେ କାର୍ଯ୍ୟ କରୁଥିଲେ । ତେଣୁ ସ୍ୱାମୀଜୀ ଅଦ୍ୱୈତ ବାବୁଙ୍କୁ ମଧୁବାବୁଙ୍କ କାର୍ଯ୍ୟ କରିବାକୁ ପଠାଉଥିଲେ । ସେଥି ଯୋଗୁଁ ସଚ୍ଚିବାବୁ ମଧୁବାବୁଙ୍କ ବିଷୟରେ ପିଲାଟି ଦିନରୁ ବାପାଙ୍କ ଠାରୁ ନାନା କଥା ଶୁଣି ତାଙ୍କ ଆଦର୍ଶ ଏବଂ ଚରିତ୍ର ଦ୍ୱାରା ପ୍ରଭାବିତ ହୋଇଥିଲେ ।

ସଚ୍ଚିବାବୁ ଜିଲ୍ଲାଜଜ୍ ଭାବେ ଓଡ଼ିଶା ସେକ୍ରେଟେରୀଏଟ୍‌ରେ ବିଧି ସଚେତକ (*Legal Remembrancer*) ପଦବିରୁ ୧୯୮୭ ମସିହାରେ ଅବସର ଗ୍ରହଣ କଲେ ।

ଘଟଣାକ୍ରମେ ଜୀବନର ସାୟାହ୍ନରେ ଏହି ପୁସ୍ତିକାଟି ତାଙ୍କ ଦ୍ୱାରା ଲିଖିତ ।

Designed by: ankita graphics, Bhubaneswar